
ବୃହତ୍ ଓ ସଚିତ୍ର
ଅଘୋଲକିସ କାହାଣୀ
ଚତୁର୍ଥ
ପ୍ରକାଶକ
ଧର୍ମଗ୍ରନ୍ଥ ଷ୍ଟୋର • କଟକ-୨
Digitized by srujanika@gmail.com

ବୃହତ୍ ଓ ସଚିତ୍ର

# ଅଲ୍ଲୋଳକରା କାହାଣୀ

## ଚତୁର୍ଥ ଭାଗ

ଲେଖକ—ଅଭମ୍ବୁଚରଣ ମହାନ୍ତ, କଥାଚନ୍ଦକର

( ନୂତନ ମୁଦ୍ରଣ )

ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର



ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର
ମୁଦ୍ରାକର—ଶ୍ରୀ ଗଦାଧର ସାହୁ
ଅଲିଶାବଜାର, କଟକ-୨
ଫୋନ୍ ନଂ-୨୪୭୯୭

ମୂଲ୍ୟ—ଆଠଟଙ୍କା ମାତ୍ର

## ଅବୋଲକର କାହାଣୀ ଚତୁର୍ଥ ଭାଗର

# ସୂଚିପତ୍ର



---

ବୃହତ ଓ ସଚିତ୍ର

# ଅବୋଲକରା କାହାଣୀ

## ଚତୁର୍ଥ ଭାଗ

ଓଁ ନମସ୍ତୁଭ୍ୟଂ ମହାମାୟେ ସାରଦେ କାମରୂପିଣୀ,
ବିଦ୍ୟାରମ୍ଭଂ କରିଷ୍ୟାମି ସିଦ୍ଧିର୍ଭବତୁ ମେ ସଦା ।

—※—

### ବିଶ୍ୱାସଘାତୀ ପୁରୁଷ କଥା

ଉତ୍ତର ଦିଗର ତୀର୍ଥ କେତେ ବୁଲି ଗୋସେଇଁ ଅବୋଲକରାକୁ ନେଇ ଦକ୍ଷିଣ ଦିଗକୁ ଗଲେ । ଯାଇଁ ଯାଇଁ ବିନ୍ଧ୍ୟଗିରି ଶାଖାର ପାହାଡ଼ିଆ ଦେଶ ପଡ଼ିବାରୁ ଗୋସେଇଁ ବେଶି ବୁଲି ପାରୁନଥାନ୍ତି । କଷ୍ଟେମଷ୍ଟେ କେତେ ବାଟ ଯାଇ ଗୋଟିଏ ନଦୀ କୂଳରେ ଧର୍ମଶାଳାଟିଏ ଦେଖି ଗୋସେଇଁ ଅବୋଲକରାକୁ କହିଲେ, ଆରେ ! ଆଜି ଏଇ ଧର୍ମଶାଳାରେ ରହିବାର ଯୋଗାଡ଼ କର । ଗଣ୍ଠିଲି ଥୋଇ ଟଙ୍କାଟିଏ ନେଇ ଯା ରୋଷେଇ ସଉଦା, ଜାଳ, ମସଲା କିଣି ଆଣେ । ଘଡ଼ିଏ ରୋଷେଇ କରି, ଖାଇ, ଦି'ଦିନ ବିଶ୍ରାମ କରି ଅନ୍ୟ ତୀର୍ଥଆଡ଼କୁ ଯିବା ।

ଗୋସେଇଁଙ୍କ କଥା ଶୁଣି ଅବୋଲକରା ଗଣ୍ଠିଲି ଥୋଇ ଟଙ୍କା ନେଇ ବଜାରକୁ ଗଲା । ଘଣ୍ଟାକବାଦେ ବଜାରରୁ ଲେଉଟି ଅବୋଲକରା ସଉଦା ଗଣ୍ଠିଲିଟା, ଜାଳପୋଡ଼ାକ ଆଣି ଗୋସେଇଁ ପାଖରେ ଦୁମ୍‌କରି କଚାଡ଼ି ଦେଲା । ମୁହଁ ଟିକୁ ଫେରା ଫେରା କରି ବସି ପଡ଼ିଲା । ତା'ର ବାଗବର୍ଗ ଦେଖି ଗୋସେଇଁ ପଚାରିଲେ, କିରେ ! ମୁହଁଟି ଶୁଖେଇ ବସିଲୁ କାହିଁକି ? ଅବୋଲକରା କହିଲା,

ମୁଁ ବଜାରରୁ ଲେଉଟିଲାବେଳେ ବାଟରେ ଦେଖିଲି ଗୋଟାଏ ପୁରୁଣା ପକ୍କାକୋଠା ସାମନାରେ ଲୁହାବାଡ଼ ଘେରା ହୋଇ ତା ମଝିରେ ବୃନ୍ଦାବନଟିଏ ଅଛି । ସେଥି ମଧ୍ୟରେ ଗୋଟିଏ ସୁନ୍ଦରୀ ସ୍ତ୍ରୀ ଓ ଗୋଟିଏ ଯୁବକର ଚିତ୍ର ଅଙ୍କାଯାଇ ମଝିରେ ନାଗରୀ ଅକ୍ଷରରେ ଲେଖା ଅଛି "ପୁରୁଷ ଜାତି ଅବିଶ୍ୱାସୀ, କୌଣସି ନାରୀ ତାଙ୍କୁ ବିଶ୍ୱାସ କରିବା ଉଚିତ୍ ନୁହେଁ ।" ଏହାର କାରଣ କ'ଣ ପଚାରିବାରୁ ସେଠାରେ ଜଣେ ଲୋକ ଲେଖାଟା ପଢ଼ି କହିଦେଲା ସିନା, ହେଲେ କାରଣ କ'ଣ କହିପାରିଲା କି ? ତା'ର କାରଣଟା ଜଣେ ଯଦି ନ ବତେଇବ ଗୋସେଇଁ, ତାହାହେଲେ ତୁମବାଟ ତୁମର, ମୋ ବାଟ ମୋର । ମୋର ଖର୍ଚ୍ଚ ଯିବା ହବ ନାହିଁ— କହି ସେ ମୁହଁ ବୁଲେଇ ବସି ରହିଲା ।

ଗୋସେଇଁ ମୁହଁରେ ହସ ଦେଖେଇ ମନେ ମନେ ଭାବିଲେ, ହ୍ୟାପୋ ମୂର୍ଖଟା ଆଜି ତ ବେକୁବ୍ ହୋଇଛି । ଆଉ ଭାବିଲେ କ'ଣ ହେବ ! ଏହା ଭାବି କହିଲେ, ହଉ ତୁ ଗୋଡ଼ ହାତ ଧୋଇ ଆସି ବସ—ସେବେଇ କରୁଥିବା, ଗପ କହୁଥିବା । ସେଇଠୁ ଯାଇ ଗୋଡ଼ ହାତ ଧୋଇ ଆସି ଅବୋଲକରା ବସିବାରୁ ଗୋସେଇଁ କହିଲେ—

ବସ୍ତ୍ର କମ୍ବଳ ଟେକ ମଥା ।
ଅବୋଲକରାରେ ଶୁଣ୍ ସେ କଥା ।

ପୂର୍ବ କାଳରେ ନାସିକ ପର୍ବତରେ ତ୍ର୍ୟମ୍ବକ ଶିବାଳୟ ନିକଟ ବନରେ ବସି କଣାଦ ନାମରେ ଜଣେ ଋଷି ତପସ୍ୟା କରୁଥିଲେ । ତାଙ୍କର ତପସ୍ୟା, ସାଧନ ସବୁ ପଦାର୍ଥ ବିଦ୍ୟା ମାଧ୍ୟମରେ ଚାଲୁଥିଲା । ମହାଜାଗତିକ ସମ୍ବନ୍ଧରେ ତାଙ୍କର ସାଧନା ଏତେ ବଢ଼ିଗଲା ଯେ ସ୍ୱର୍ଗରେ ଥାଇ ଚନ୍ଦ୍ର ତାଙ୍କୁ ଈର୍ଷା କଲେ । ବିଶ୍ୱକର୍ମା ଭାବିଲେ, ମୋ କଳା କାରିଗରି ଯାହାଅଛି ସବୁ ନେଇ ଏ

ରୂଷି ମଣିଷଙ୍କୁ ଦେବ ବୋଧେ । ଅଗ୍ନି କୁମାର ଚମକଗଲେ ।
ଗଣେଶ ଡାକଲେ ଇନ୍ଦ୍ର କ୍ଷୋପ । କଣାଦ ଋଷି ଯେଉଁ ଅଣୁ
ସାଧନ କରୁଛନ୍ତି, ଅଳ୍ପ ଦିନରେ ଯାଇ ଦେବଲୋକରେ ମଣିଷଙ୍କୁ
ଥୋଇଦେବ । ଇମିତି ସବୁ ଦେବତା କୁହାକୁହି ହେବାରୁ ଇନ୍ଦ୍ର
ଅନେକ ଚିନ୍ତା କରି କହିଲେ — ହଉ, ତୁମେ ଚିନ୍ତା କରନା,
ମୁଁ ତା'ର ଉପାୟ କରୁଛି, ନୋହିଲେ ସିଏ ଦିନେ ଆସି ମୋ
ଇନ୍ଦ୍ରପଦ କାଢ଼ିନେବ । ଏହା ଭାବି ସେ ବିଶ୍ୱାଚୀ ନୋଲ ଗୋଟିଏ
ଅପ୍‌ସରାକୁ ଡାକି ତାକୁ କହିଲେ, ତୁ ମର୍ତ୍ତ୍ୟପୁର ନାସିକ ପର୍ବତକୁ
ଯା, ସେଠାରେ କଣାଦ ନାମରେ ଜଣେ ଋଷି ଘୋର ସାଧନା
କରୁଛନ୍ତି । ତାଙ୍କୁ ରୂପ ରସରେ ବଶ କରି ତାଙ୍କ ତପ ଭଙ୍ଗ କରି
ଆସିବୁ । ଇନ୍ଦ୍ରଙ୍କ ମୁହଁରୁ ଏକଥା ଶୁଣି ବିଶ୍ୱାଚୀ ଖୁସିହୋଇ
ସ୍ୱରଗରୁ ଖସି ଆସିଲା ମରତକୁ ।

ବିଶ୍ୱାଚୀ ନାସିକ ପାହାଡ଼ର ତ୍ର୍ୟମ୍ବକ ଶିବ ମନ୍ଦିରରେ
ପହଞ୍ଚି ଦେଖିଲା କଣାଦ ଋଷି ଆଖି ମୁଦି ଧ୍ୟାନରେ ବସିଛନ୍ତି ।
ତାଙ୍କ ମୁଖମଣ୍ଡଳରୁ ଅଗ୍ନିଶିଖା ପରି ଜ୍ୟୋତି ବାହାରୁଛି । ଏପରି
ଅବସ୍ଥାରେ ବିଶ୍ୱାଚୀ ବିପଦରେ ପଡ଼ିଲା । ଯା ହଉ ଅନେକ ଭାବି
ଚିନ୍ତି ସେହି ଆଶ୍ରମ ନିକଟରେ ଖଣ୍ଡିଏ କୁଡ଼ିଆ ଘର କରି ରହିଲା ।
ସବୁବେଳେ ସେ ଋଷିଙ୍କ ଭୁଲାଇ ଦେବାକୁ ଚେଷ୍ଟା କରୁଥାଏ ।
ହେଲେ ଦୁନିଆଁରେ କୋଉକଥା ଚିର ହୋଇ ରହୁଛି । କେତେ-
ଦିନ ପରେ କଣାଦଙ୍କର ଧ୍ୟାନ ଭଙ୍ଗ ହେଲା । ସେ ଆଶ୍ରମରେ
ଶିଷ୍ୟମାନଙ୍କୁ ଡାକି ତାଙ୍କର ସାଧନା ବିଷୟରେ ବୁଝାଇଲେ ।
ଏହି ସମୟରେ ବିଶ୍ୱାଚୀ ନାନା ପ୍ରକାର ଅଳଙ୍କାର ମଣ୍ଡି ହୋଇ
ଯାଇ ଋଷିଙ୍କ ପାଖରେ ଛିଡ଼ା ହୋଇ କଥା ଶୁଣୁଥାଏ । କେବେ
କେବେ ଋଷିଙ୍କ ଆଡ଼କୁ ଆଡ଼ଆଖିରେ ଅନାଉଥାଏ । ଋଷିଙ୍କୁ
ବଶ କରିବା ପାଇଁ ନାନା ପ୍ରକାର ହାବଭାବ କରୁଥାଏ ।

ଏକେ ତ ସ୍ୱର୍ଗର ଅପସରା ଯୁବତୀ, ଲାବଣ୍ୟବତୀ, ଅଙ୍ଗଭଙ୍ଗୀରେ ଛଇ ଛଟକରେ ଯତମତ ହୋଉଥାଏ । ତା'ର ରୂପ ଯୌବନ ଦେଖି କଣାଦଙ୍କ ମନ ଅଧୀର ହୋଇଗଲା । ସେ ଶିଷ୍ୟମାନେ ନଥିବା ସମୟରେ ବସ୍ତ୍ରାଚୀକୁ ତା'ର ପରିଚୟ ପଚାରି କହିଲେ, ତୁମକୁ ଦେଖି ମୋର ତପ ଜପ ସବୁ ପାଶୋରି ଗଲାଣି । ତୁମେ ମୋ ସହିତ ବିହାର କର । ନ ହେଲେ ତୁମକୁ ବ୍ରହ୍ମହତ୍ୟା ଦୋଷ ଲାଗିବ । ଏକଥା ଶୁଣି ବସ୍ତ୍ରାଚୀ ମୁରୁକିହସା ଦେଇ କହିଲା—ତୁମେ ଊର୍ଦ୍ଧ୍ୱରେତା ମହର୍ଷି । ନାରୀସଙ୍ଗ କରି ସବୁ ଧର୍ମ ସାରିବ କାହିଁକି ? ଋଷି ତା କଥା ଶୁଣି କହିଲେ— "ଦ୍ୱିଜରାଜ ମୁଖୀ ଗଜରାଜ ଗତି, ମୃଗରାଜ ବରେଜଡମଧ୍ୟକଟି, ଯଦି ସା ପ୍ରମଦା ହୃଦୟେ ବସତି, କଃ ଜପଃ କଃ ତପଃ କଃ ସମାଧିବିଧି ।" ଯଦି ଚନ୍ଦ୍ରମୁଖୀ, ଗଜଗାମିନୀ ଓ ସିଂହ ମଝାପରି ସରୁ କଟି ସୁନ୍ଦରୀ ରମଣୀର ହୃଦୟ ମିଳେ ତାହାହେଲେ ଜପ ତପ ସମାଧି ବିଧି କରି ଲାଭ କ'ଣ ହବ ? ତେଣୁ ମୋର ଅନୁରୋଧ ରଖି ମୋ ସହିତ ରତି ବିହାର କରି ମୋ ଜୀବନ ରକ୍ଷାକର । ଏହାଶୁଣି ବସ୍ତ୍ରାଚୀ ତା'ର ମନୋବାସନା ପୂରିବ ଜାଣି କଣାଦ ଋଷିଙ୍କ ସହିତ ରତି ବିହାର କଲା ।

କଣାଦଋଷି ବସ୍ତ୍ରାଚୀକୁ ପାଇ ସବୁ ଜପ ତପ ଛାଡ଼ିଦେଲେ । ଏମିତି କରି କେତେଦିନ ଯିବାରୁ ଋଷିଙ୍କ ଔରସରେ ଅପ୍ସରା ଗର୍ଭବତୀ ହେଲା । ତାକୁ ଗର୍ଭବତୀ ହେବାର ଦେଖି ଋଷି ନିଜର ଭୁଲ ବୁଝିପାରି ତାକୁ ଛାଡ଼ି ପୁଣି ତପ କରିବା ପାଇଁ ହିମାଳୟକୁ ଚାଲିଗଲେ । ବସ୍ତ୍ରାଚୀ ସ୍ୱର୍ଗ ବେଶ୍ୟା, ମର୍ତ୍ତ୍ୟରେ ରହି କ'ଣ କରିବ ଦଶମାସ ନ ପୂରୁଣୁ କନ୍ୟାଟିଏ ଜାତ କରି ତାକୁ ଗୋଟିଏ ମଞ୍ଜୁଷାରେ ଭର୍ତ୍ତିକରି ଗୋଦାବରୀ ନଦୀରେ ଭସାଇ ଦେଲା ।

ସେହି ମଞ୍ଜୁଷାଟି ଭାସି ଭାସି ଯାଉଥାଏ । ତେଣୁ ବିଦ୍ୟାଧର ବୋଲି ଜଣେ ସୌଦାଗର ଜାଭା ଦ୍ୱୀପରୁ ବାଣିଜ୍ୟ କରି ଲେଉଟୁଥାଏ । ତା'ର ଧନରତ୍ନ ଭରା ଡୋଙ୍ଗାଟି ଗୋଦାବରୀ ନଦୀ ଦେଇ ଆସୁ ଆସୁ ଦେଖିଲା ଯେ ଗୋଟିଏ କାଠମଞ୍ଜୁଷା ନଦୀ-ସ୍ରୋତରେ ଭାସି ଯାଉଛି । ସେ ମଞ୍ଜୁଷାଟିକୁ ଦେଖି ସୌଦାଗର ଉଠାଇ ନେଲା ଜାହାଜକୁ । ତାକୁ ଖୋଲି 'ଦେଖିଲାବେଳକୁ ତା' ଭିତରେ ଶିଶୁ କନ୍ୟାଟିଏ ଶୋଇ ରହିଛି । ଦେଖିବାକୁ ଚନ୍ଦ୍ରକଳା ଭଳି ସୁନ୍ଦରୀ । ତାକୁ ଦେଖି ସୌଦାଗର ଖୁସି ହୋଇ ନେଇଗଲା ।

ଯୋଗକୁ ତାର ଝିଅପିଲା ନ ଥିଲା । ସେ କନ୍ୟାଟିକୁ ନେଇ ସାଧବାଣୀକୁ ଦେବାରୁ ସେ ମଧ୍ୟ ଖୁସି ହୋଇ ଝିଅଟିକୁ ପ୍ରତିପାଳନ କଲା । ଝିଅଟିର ରୂପ ଦେଖିବାକୁ ବିଜୁଳିଠାରୁ ବଳି ସୁନ୍ଦର ।

"ଅତୀବ ସୁନ୍ଦରୀ ଜାତ କନ୍ୟା ସୁ-ରୂପସୀ,
ମନ ମୋହେ ଜନ ଜନଙ୍କର ହସି ହସି ।
ଯା ରୂପକୁ ସମତୁଲ ହେବାରୁ ଦାମିନୀ,
ରଖିଲେ ପିତା କନ୍ୟାର ନାମ ସୌଦାମିନୀ ।
ଚନ୍ଦ୍ରକଳା ପରି ବଢ଼େ କନ୍ୟା ଦିନୁ ଦିନ,
ଲଳିତ ଲାବଣ୍ୟେ ମୋହେ ପିତା ମାତା ମନ ।
ଦେଖୁ ଦେଖୁ ବଢ଼ି କନ୍ୟା ହୋଇଲା ଯୁବତୀ,
ଲଳିତ ଚଳନେ ବାଳିକା ଚାଲେ ଯଥା ମତ୍ତ ।
କମଳ କଳିକା ଭଳି ଯୁଗ୍ମ ଉରଜରେ,
ନତାନତ ବକ୍ଷ ଶୋଭେ ସ୍ୱର୍ଣ୍ଣ ମଣି ହାରେ ।
ସୁଗୋଲ ଭୁଜରେ ବାଜୁ ବଳୟ ସଜିତ,
କର୍ଣ୍ଣତଟେ ବିଲସିତ ମୁଖଚନ୍ଦ୍ର ଜିତ ।

ସାଙ୍ଗ ସାଥୀ ମେଳେ ବୁଲେ ବାଳା ସୌଦାମିନୀ,
ଆଉ ସ୍ବହାଣିରେ ନଏ ଜନମନ କିଣି ।
ଯୁବତୀ ଦେଖାରୁ ମାତା ବୁଝାଇ ପିତାକୁ
ଭଲ ଘର ବର ଦେଖି ଦିଅ ଦୁହିତାକୁ ।
ଶୁଣି ପିତା ଘଟସୁହକାରୀକୁ ପଠାଇ,
ବର ଅନ୍ବେଷଣ କଲା କନ୍ୟା ଦେବାପାଇଁ ।"

ଘୋରକୁ ଘୋଟକମାନେ ପନ୍ଦର ଦିନର ବାଟ ଯିବାପରେ ଖବର ପାଇଲେ ସେଠାକାର ବଡ଼ ଧନୀ ସୌଦାଗରର ଗୋଟିଏ ବୋଲି ପୁଅ ଅବିବାହିତ ଅଛି । ପୁଅକୁ ଏବେ ଷୋଳଏ ବର୍ଷ । ଧନୀ ସୌଦାଗରର ଗୋଟିଏ ବୋଲି ପୁଅ ହବାରୁ ମାଆ ବାପର ସେ ଗେହ୍ଲା ଦୁଲାଳ । ମା' ତା ଦିହରେ ମାଛିଟାଏ ବସେଇବାକୁ ଦିଅନ୍ତି ନାହିଁ । ସେହିପରି କରିବାରୁ ସେ ଟୋକା ଭଲ ପଢ଼ା ଶୁଣା କରିନାହିଁ । ଲଫଙ୍ଗା ପୁଅର ନା ରଖିଛନ୍ତି ଗୁଣାକର । ଶାସ୍ତ୍ର କହୁଛି—

"ଲାଳନେ ଗହବୋ ଦୋଷା ସ୍ତାଡନେ ବହବୋ ଗୁଣାଃ
ତସ୍ମାତ୍ ପୁତ୍ରଞ୍ଚ ଶିଷ୍ୟଞ୍ଚ ତାଡୟେନ୍ନତୁ ଲାଳୟେତ୍ ।"

ବାପ ମା ସେ କଥା ନ ବୁଝି ପୁଅକୁ ଆଦର ଦେଇ ବାନର କରି ଥୋଇଛନ୍ତି । ଅବିକା ସେ ସାଙ୍ଗ, ସୁଆଙ୍ଗ, ଦାରୁ, ଦାସୀ କରି ଧନ ସାରୁଛି । ବୁଢ଼ା ତାହାର ଚିନ୍ତା କରି କରି ଅଳ୍ପଦିନରେ ରୋଗାଗ୍ରସ୍ତ ହୋଇ ପଡ଼ିଲା । ଧନ ଅର୍ଜିବାର ବାଟ ଆଉ ରହିଲା ନାହିଁ । ଏଣେ ପୁଅ ଦଶ ପନ୍ଦର ହଜାର ଟଙ୍କା ବାପ ଅଜାଣାରେ କରଜ କରିଥାଏ । ଏହିବେଳେ ବାପବୁଢ଼ା ମରି ଯିବାରୁ ପୁଅ ଆଉ ଯାହା ଜମିବାଡ଼ି ଥିଲା ତାକୁ ସାଇତି ସମ୍ଭାଳି ପାରିଲା ନାହିଁ । ମହାଜନମାନେ ବିରିଆଉ ଘେରିଗଲେ । ସେଇ ଡରରେ ଦିନେ ରାତିରେ ଲୁଚି ଗୁଣାକାର ଦେଶଛାଡ଼ି ପଳାଇଗଲା । ଅକର୍ମା ପୁଅ ବା

କଣ କରି ପେଟ ପୋଷିବ ? ବାଟ ହାଟରେ ମାଗି ଖାଇ ଶେଷରେ ଯାଇ ବିଦ୍ୟାଧର ସୌଦାଗର ଦେଶରେ ପହଞ୍ଚିଲା ।

ସେଠାରେ ପହଞ୍ଚି ସେ ଯେମିତି ବାପର ପରିଚୟ ଦେଇଛି, ବିଦ୍ୟାଧର ସୌଦାଗର ତାକୁ ଡକାଇ ଆଦର ଯତ୍ନ କରି ଘରେ ରଖିଲା । ଗୁଣାକରର ବାପ ଯେ ଜଣେ ବଡ଼ ସୌଦାଗର ଥିଲା, ଏ କଥା ତ ବିଦ୍ୟାଧର ଜାଣେ । ତାର ଗୋଟିଏ ବୋଲି ପୁଅ, ଏ କଥା ସେ ଶୁଣିଥିଲା । ବର୍ତ୍ତମାନ 'ହଜିଲା ବଳଦ ଖୋଜିଲାଠେଇଁ' ପରି ଇଏ ପହଞ୍ଚିବାରୁ ତା'ରି ସଙ୍ଗରେ ସୌଦାମିନୀକୁ ବାହାଦେବ ବୋଲି ଠିକ୍ କଲା । ଶାସ୍ତ୍ର କହୁଛି—

"ପୂର୍ବାର୍ଜିତ ଯଦା ବିଦ୍ୟା, ପୂର୍ବାର୍ଜିତ ଯଦା ଧନଂ,
ପୂର୍ବାର୍ଜିତ ଯଦା କନ୍ୟା ଅଗ୍ରେ ଧାବନ୍ତି ଧାବନ୍ତି ।"

ପୂର୍ବଜନ୍ମରେ ଦେଇଥିବା ବିଦ୍ୟାଦାନ, ଧନଦାନ କନ୍ୟାଦାନ ପରଜନ୍ମରେ ନିଶ୍ଚୟ ମିଳେ । ସେହିପରି ଗୁଣାକରର ପୂର୍ବଜନ୍ମର ପୁଣ୍ୟଫଳରୁ ସୌଦାମିନୀ ପରି ସୁନ୍ଦରୀ କନ୍ୟାକୁ ବିଭାହୋଇ ସେଇଠି ରହିଲା ।

କଥାରେ ଅଛି ଯାହା ହାଣ୍ଡିରେ ପିଏ ଗୁଡ଼ଜଳ ଦେଇଚ ସିଏ ସେଇଠାକୁ ଯିବ । ବାପା ମା ଅନ୍ଧ, ପ୍ରଜାପତି ସମ୍ବନ୍ଧ କରି ଘଟାଇ ଦେବେ । ସୌଦାମିନୀକୁ ବାହାହୋଇ ଗୁଣାକର ମହାମଉଜରେ ସେଇଠି ଥାଏ । କି ଉପାୟରେ ନିଜ ପେଟ ପୋଷିବ, ଶ୍ବଶୁରଙ୍କୁ ଚଳେଇବ ଏ ଭାବନା ତାର ଆଦୌ ନାହିଁ । ହେଲେ ଓଡ଼ିଆରେ ଅଛି ।

ଏକ କୁଣ୍ଡ କୁଣ୍ଡ ମାରେ,
ଏକ କୁଣ୍ଡ କୁଣ୍ଡ ପାଳେ ।
ଏକ କୁଣ୍ଡ ଶ୍ବଶୁର ଘରେ ଜ୍ବାଇଁ
ଏକ କୁଣ୍ଡ ଭଉଣୀ ଘରେ ଭାଇ ।

ଶ୍ୱଶୁର ଘରେ ଜୁଆଇଁ କେତେଦିନ ସମ୍ମାନ ରକ୍ଷି ଚଳିବ । ଦେଲ ନାଶ, ଦେଲ ପାଶ । ବାହାହେଲା ଝିଅ ଜୁଆଁଇକୁ ନେଇ ବାପଘରେ ରହିବ ଏଇଟାକୁ କେହି ପସନ୍ଦ କଲେ ନାହିଁ । ମାଇପେ ମାଇପେ ଭୁନ ଭୁନ ଫୁସଫାସ ହେଲେ । ସୌଦାମିନୀ କାନକୁ କାଟିଲା । ସେ ଥରେ ଦି' ଥର ଶୁଣାଇବାକୁ କହିଲା । ହେଲେ ସେଟା ତ କେବଳ ଆକୃତିରେ ମଣିଷ । ଅକର୍ମା, ଅଯୋଗ୍ୟ ତାକୁ ଯିଏ ଯେତେ କହିଲେ ଶୁଣିବ କାହିଁକି ? ସେଠୁ ଗଲେ, ସେମିତି ଭଜା ମଜାରେ ଖାଇବାକୁ ପାଇବ କେଉଁଠୁ । ସେଥିପାଇଁ କଥାଟାକୁ ବଡମନକୁ ନ ଦେଇ ପାଖକାଟି ଯାଉଥାଏ । ସୌଦାମିନୀ ମା ପାଖରେ କହିବାରୁ ସେ ବିଦ୍ୟାଧରଙ୍କୁ କହି ଝିଅ ପଠେଇବାର ଯୋଗାଡ଼ କରେଇଲା । କଥାରେ ଅଛି—ବେହିୟାଙ୍କୁ ଯୋତାମାଡ଼ ଦେଲେ ବି ବାଧେ ନାହିଁ । ତାଙ୍କୁ କେବଳ ଗଳଥା ଦେଇ ଚଢ଼ିବା କଥା । ଗୁଣାକରକୁ ଯିବାପାଇଁ ସବୁମନେ ବାଧ୍ୟ କରିବାରୁ ସେ ନିରୁପାୟ ହୋଇ ରାଜିହେଲା । ହେଲେ ଲଫଙ୍ଗା ଟୋକାଙ୍କର ତ ଠକାମି, ଫେରେବି ବୁଦ୍ଧିର ଅଭାବ ନ ଥାଏ । ସେ ଗୋଟାଏ ବୁଦ୍ଧି ପାଞ୍ଚି ଶ୍ୱଶୁରଙ୍କୁ କହିଲା—ଆମ ଘରଟ ଏଠାରୁ ପନ୍ଦର ଦିନର ବାଟ । ଯିବା ଆସିବାକୁ ବଡ଼ ଅସୁବିଧା ସେଥିପାଇଁ ଆପଣ ଯାହା ଯାନଯୌତୁକ ଦେବେ ସେଗୁଡ଼ିକୁ ବସ୍ତୁ ଆକାରରେ ନଦେଇ ଟଙ୍କା ସୁନା ଆକାରରେ ଦିଅନ୍ତୁ । ତା'ଛଡ଼ା ଆମର ଜିନିଷ ପତ୍ରର କେଉଁ ଅଭାବ ଅଛି ଯେ ହାଣ୍ଡିଟେ କରେଇଟେ କୋହିନେଲେ ଘରପୂରିବ ଯାହା ଦେବତ ହୀରା ମାଳା ଟଙ୍କା ସୁନା ଆକାରଂରେ ଦିଅ ଯେ ନବାକୁ ଯେପରି ଅଡୁଆ ନ ହୁଏ । ଗୁଣାକର ଯୁକ୍ତିଟା ମନକୁ ମାନିବାରୁ ବିଦ୍ୟାଧର ରାଜିହୋଇ ହୀରାଲଗା ହାର, ମୁକ୍ତାଲଗା ବାଜୁ, ମୋତି ଲଗା ବଳା, ମାଣିକ ଲଗା ଚୁଡ଼ି କରି ସୌଦାମିନୀଙ୍କ ସଜେଇ ଦେଲା । ତାକୁ କେତେକ ସୁନାର ମୋହର ଦେଇ ଝିଅ ଜ୍ୱାଇଁଙ୍କୁ

ବିଦାୟ କରିଦେଲେ । ଗୁଣାକର ଓ ସୌଦାମିନୀ ଦୁହେଁ ସୁଆସ ପାଲିଙ୍କିରେ ଚଢ଼ି ମେଲାଣି ନେଇ ଚାଲିଲେ ।

କିଛି ବାଟ ଯିବା ଉତ୍ତାରୁ ଗୁଣାକର ପୁଣି ଗୋଟାଏ ବୁଦ୍ଧି ଫାନ୍ଦ କହିଲେ, ପ୍ରିୟେ ! ଆମର ନୂଆ ବାହାଘର ପାଇଁ, ଦୁହେଁ ଯୁବକ-ଯୁବତୀ । ନୂଆ ନାଗରକୁ ନୂଆନାଗରୀ । ସବୁବେଳେ ଦୁଷ୍ଟମନ ଚଟେଳା ଜାଗା' ଖୋଜି ବୁଲୁଛି । ଏ ବେଳେହେଲେ ବାରଜଣ ଆମକୁ ବୋହି ନେଇ ନିଜେ ତ କଷ୍ଟ ପାଉଛନ୍ତି, ଆମ ମିଳନ ମଝିରେ ବି ବାଧା ଦେଇ କଷ୍ଟ ଦଉଛନ୍ତି । ଏଗୁଡ଼ାଙ୍କୁ ମୁଁ ବିଦା କରିଦିଏ । ଦୁହେଁ ଚାଲିଯିବା । ଯୋଉଠି ମନହେବ ସେଇଠି ରହି ମଧୁ ଚନ୍ଦ୍ରିକା କରି କରି ଯାଉଥିବା । ଏପରି କଥାଶୁଣି ସୌଦାମିନୀ କହିଲେ 'ନାରୀ ସ୍ୱାମୀ ପାଖରେ ଥିଲେ ଯମକୁ ବି ଡରେ ନାହିଁ ।" ମୁଁ ତୁମକୁ କହିବି କଅଣ । ତମକୁ ଯାହା ଭଲ ହେବ ସେଇୟା କର ମୁଁ କଅଣ ମନା କରୁଛି । ସୌଦାମିନୀ କଥା ଶୁଣି ଗୁଣାକର ପାଉଣା ଦେଇ ବେହେରା ସୁଆସ ସବୁ ଫେରାଇ ଦେଲେ । ନିଜେ ଟଙ୍କା ସୁନାଗଡ଼ ଗୁଜୁରାକର ବୋଝଟି ଧରି ସୌଦାମିନୀକୁ ନେଇ ଆଗେଇଲେ ।

ଏମିତିକରି ଦେରସ୍ତ ଯାତ୍ରା ଦୁହେଁ ଚାଲିଥାନ୍ତି । ଯାଉଁ ଯାଉଁ ବାଟରେ ଗୋଟିଏ ବଣୁଆ ଜାଗା ପଡ଼ିଲା । ସେଠାରେ ଗୋଟିଏ ଗଛମୂଳରେ ବସି ଗୁଣାକର କହିଲେ, ପ୍ରିୟତମେ ! ଆଗକୁ ଗୋଟିଏ ନିଘୁଞ୍ଚିଆ ବଣ ପଡ଼ୁଛି । ଚୋର ଡକାଏତ କେତେ କୋଉଠି ଲୁଚି ଛପି ବସିଥିବେ । ତୁମେ ଏ ପୋଉସବୁ ଦାମିକା ଅଳଙ୍କାର ପିନ୍ଧିଛ ଯାକୁ ଦେଖିଲେ ସେମାନେ କଅଣ ଆମକୁ ବଞ୍ଚେଇବେ । ଗୋଟି ଗୋଟି ବେକଭାଙ୍ଗି ଗହଣାଗାଣ୍ଠି ଲୁଟିନେବେ । ଗହଣା ଲୋଭରେ ମାରିବାକଥା ସାର ହେବ ସିନା ମୁଁ କହୁଛି ତୁମେ ଦି' ଖଣ୍ଡ ଚୂଡ଼ି ହାତରେ ପକାଇ ବାକି ଗହଣା ଉତାରିଦିଅ । ସେ

ପାଖ ମାଡ଼ିବେ ନାହିଁ । ଏକଥା ଶୁଣି ସୌଦାମିନୀ ଦେହରୁ ଅଳଙ୍କାର ସବୁ ଉତାରି ଦେଲା । ଗୁଣାକର ସେଗୁଡ଼ିକୁ ବୋକଚ୍ଛ କରି ଯାଉଥାଏ । ଯାଉ ଯାଉ ବାଟରେ ଗୋଟାଏ କୂଅ ଦେଖିବାରୁ ସୌଦାମିନୀକୁ କହିଲା, ପ୍ରିୟେ ! ଦେଖିବଟି ସେ କୂଅରେ ପାଣିଅଛି କି ନାହିଁ । ବଡ଼ ଶୋଷ କଲାଣି, ଥିଲେ ମନ୍ଦଏ ପିଇ ଦିବା । ଏହା ଶୁଣି ସୌଦାମିନୀ ଯାଇ କଅକୁ ମୁହଁ ବଢ଼େଇ ପାଣି ଦେଖୁଛି ପଛରୁ ଗୁଣାକର ତା ଗୋଡ଼ ଦୁଇଟାକୁ ଧରି ଲେଉଟାଇ ଦେଲା ଯେ ସୌଦାମିନୀ ଏକଦା'ରେ କୂଅଭିତରେ ପଡ଼ି ଭଅଁ ଭଅଁ କରୁଥାଏ, ହେଲେ ତା କଥା ଶୁଣୁଛି କିଏ ? କୂଅକୁ ପେଲଦେବା ଲୋକ କଣ ଫେରିଆସେ ନା! ଘରପୋଡ଼ିଆ ଚୁଅଟାକୁ ବୋହିବଏ । ଗୁଣାକର ବୁଜୁଳା ଧରି ଚମ୍ପଟ୍ ।

ବାଟରେ ଯାଉଁ ଯାଉଁ ଭାବିଲା ବୁଦ୍ଧିମାନର କାର୍ଯ୍ୟ କରିଚନ୍ତି ଖେଟୀ ମାଇକିନିଆଟାକୁ ଆଣିଥିଲେ ବଡ଼ ହଇରାଣରେ ପଡ଼ିଥାନ୍ତି । ବ'ବର୍ଷକୁ ଗୋଟାଏ ଯୋଡ଼ାଏ କରି ଜନ୍ମ କରୁଥାନ୍ତା । ସ୍ୱାକୁ ପୋଷ ପୁଣି ତାକୁ ପାଳ । ଏତେ ଝିଞ୍ଜଟ୍ କିଏ ଯିବ ? ଯାହା ଦଶ କୋଡ଼ିଏ ହଜାରର ଅଷ୍ଟୋଟନ ପାଇଚି ଏଇଥିରେ ଦେଶ୍ ତଣବର୍ଷ ନିଶ୍ଚିନ୍ତରେ କଟିଯିବ । ଏହାଭାବି ଟଙ୍କାଗହଣାର ବୁଜୁଳାଟି ଧରି ଶୀଘ୍ର ଶୀଘ୍ର ପଳାଇଗଲା ।

ଏଣେ ସୌଦାମିନୀ କୂଅରେ ମଜ୍ଜ କଏଅଛି ମୋତେ ଉଦ୍ଧାର କର, ମୋତେ କୂଅରୁ ଉଦ୍ଧାର କର । ଏମିତି ପ୍ରାଣ ବଞ୍ଚଳରେ ଡାକୁଥାଏ । କେତେବେଳ ପରେ ଉତ୍ତରରୁ ସେଇ ବାଟରେ କେତେ ଜଣ କାଠକଟାଳୀ ବଳଦଆ ସେହି କୂଅ ପାଖଦେଇ ଯାଉଥିଲେ । କୂଅ ଭିତରୁ ଘଁ ଘଁ ଆବାଜ ଆସୁଥିବାରୁ ଶୁଣି ବଳଦ ଅଟକାଇ ଘଟଣା କଣ ଜାଣିବାକୁ କୂଅ ଭିତରକୁ ବୁଙ୍କି ଦେଖିଲେ ବେଳକୁ, ମାଇପିଲେକଟିଏ ଆକୁଳ ହୋଇ ଡାକୁଚି । ସେଇଠୁ ସେମାନେ

ନଇ ଯୋଡ଼ ଯୋଡ଼ କୂଅରେ ପକେଇ ସୌଦାମିନୀକ ଉଠାଇ ଆଣିଲେ ଉପରକୁ । ସୌଦାମିନୀ ଉପରକୁ ଆସି କେତେବେଳକେ ସୁସ୍ଥ ହେବାରୁ ବଳଦଆମାନେ ତାର ପରିଚୟ ଏବଂ କାହିଁକି କୂଅରେ ପଡ଼ିଥିଲ ପଚାରିଲେ । ସୌଦାମିନୀ ତ ସଜ୍ଞ କନ୍ୟା, ସ୍ୱାମୀନିନ୍ଦା କଥା ନ କହି ଆମେ କେତେଜଣ ସ୍ତ୍ରୀଲୋକ ମିଶି ଏ କୂଅକୁ ପାଣି ନବାକୁ ଆସିଥିଲୁ । ବାଟରେ ଚୋର ଦେଖି କଏ କୁଆଡ଼େ ପଳେଇଲେ । ଚୋର ମୋତେ ଧରି ମୋର ଗହଣାଗଣ୍ଠି ନେଇ ମୋତେ ଏଇ କୂଅରେ ପେଲିଦେଇ ଯାଇଛନ୍ତି । ମୁଁ ବିଦ୍ୟାଧର ସୌଦାଗରଙ୍କ ଝିଅ ସୌଦାମିନୀ । ବିଦ୍ୟାଧର ସୌଦାଗରନାଁ କହିବାରୁ ବଳଦଆମାନେ ଚିହ୍ନିଲେ । କଏ କହିଲା, ମୁଁ ହଳଦୀ ବିକିବାକୁ ଯାଇ ତୁମକୁ ଦେଖିଚି । କଏ କହିଲା, ମୁଁ କାଠ ବିକିବାକୁ ଯାଇ ତମେ ସ୍କୁଲରୁ ଆସୁଥିବାର ଦେଖିଚି । ଏମିତି କୁହାକୁହି ହୋଇ ସୌଦାମିନୀକୁ ନେଇ ବିଦ୍ୟାଧର ଦୁଆରେ ପହଞ୍ଚାଇ ଦେଲେ । ବିଦ୍ୟାଧର ସୌଦାମିନୀଠାରୁ ଘଟଣାଯାକ ଶୁଣି ବଳଦଆ ମାନଙ୍କୁ ପୁରସ୍କାର ଦେଇ ବିଦା କରିଦେଲେ ।

ମା ବାପା ପଚାରିବାରୁ ସୌଦାମିନୀ କହିଲା ଆମେ ଗଲାବେଳେ ବାଟରେ ମୋ ଗହଣାଯାକ ମୋ ସ୍ୱାମୀ ଧରି ଯାଉଥିଲେ । ବାଟରେ ଚୋର ଆକ୍ରମଣ କରି ମୋତେ କୂଅକୁ ଠେଲିଦେଇ ତାଙ୍କୁ ଧରି ମାରିଦେଲେ କି କଣ ମୋତେ ଆଉ ଜଣାନାହିଁ । ହେଲେ ତାଙ୍କପାଇଁ କୌଣସି ଚିନ୍ତା କରନା, ସେ ଯୋଉଠିକି ଗଲେବି ଜୀବନରେ ଅଛନ୍ତି । ବେଳହେଲେ ଆସି ମୋତେ ପୁଣି ନେଇ ଯିବେ । ତା'ର ଏପରି କଥା ଶୁଣି ବାପ ମା ଆଶ୍ୱସ୍ତ ହୋଇ ରହିଥାନ୍ତି । ଏମିତି କରି ଦିନପରେ ଦିନ ଗଡ଼ି ଚାଲିଥାଏ । ସୌଦାମିନୀ ବାପଘରେ ରହି ସ୍ୱାମୀଙ୍କ ମଙ୍ଗଳ ଚିନ୍ତାକରି, ଦେବା ଦେବୀଙ୍କୁ ପୂଜୁଥାଏ । ଏଣେ ଗୁଣାକର ଚୋରଯାର ଗହଣା-ଟଙ୍କା

ଯାଇ ଭାରି ଖୁସି । ଓଡ଼ିଆ ପ୍ରବାଦରେ ଅଛି-ମଦଖୋର, କାମାତୁର ଚୋର, ଏମାନଙ୍କର ନାହିଁ ବିଚାର । ଏହି ସବୁ ଦୋଷଗୁଡ଼ିକୁ ନେଇ ତ ସେ ଗୁଣାକର ନାମ ଧରିଚି । ହାତରେ ଯେମିତି ମୋଟାମୋଟି ଧନ ପାଇଲା, ଦିନକୁ ଶହ ପଚାଶ କରି ଖର୍ଚ୍ଚ କଲା । ପ୍ରତାରକ ବନ୍ଧୁମାନେ ଯୁଟିଲେ । କିଏ କହିଲା, ଆରେ ସେଠି ବଡ଼ିଆ ଯାତ୍ରାବାଲା ଆସିଛନ୍ତି ଚିଲୁ । କିଏ କହିଲା ଆରେ ଅଳକା ସେ ବଜାରକୁ ଯୋଡ଼ି ନୂଆ ଦାଗିଟି ଆସିଚି ଏକବାରେ ଉର୍ବଶୀପରି । ଏମିତି କହି କହିକରି ବନ୍ଧୁମାନେ ଗୁଣାକରର ଧନକୁ ଅଳପ ଦିନରେ ସାରିଦେଲେ । ତା’ ପରେ ଯୋଉ କଥାକୁ ସେଇ କଥା । ଗୁଣାକର କଣା କଉଡ଼ିକରୁ ବି ହୀନ ହୋଇପଡ଼ିଲା । କେଉଁଠିକି ପେଟ ପୋଷିବାକୁ ଯିବ ସେ ଚିନ୍ତାକରି । ଶାସ୍ତ୍ର କହୁଚି—

‘ମୂର୍ଖସ୍ୟତ ଦିଗଶୂନ୍ୟ
ସର୍ବଶୂନ୍ୟଂ ଦରିଦ୍ରତା’ ।

ମୂର୍ଖଲୋକକୁ ଦିଗଶୂନ୍ୟ ଓ ଦରିଦ୍ରକୁ ସବୁଶୂନ୍ୟ ଦିଶେ । ସେହି ଦଶା ପଡ଼ିବାରୁ ଗୁଣାକର ନିରୁପାୟ ହୋଇ ପୁଣି ଯାଇ ଶଶୁର-ଘରେ ହାଜର ହେଲା । ସେଠି ପହଞ୍ଚିବାରୁ ତାକୁ ଦେଖି ଶାଶୁ-ଶ୍ୱଶୁର ବଡ଼ ଆନନ୍ଦ ହେଲେ । ଶ୍ୱଶୁର ଡାକି ପଚାରିଲା, ଏତେ-ଦିନଯାଏ କୋଉଠି ଥିଲ । କଥାରେ ଅଛି—ମୂର୍ଖ ମରଣ ଯମକୁ ଅଗୋଚର । ଠକାମୀ ମୂର୍ଖାମୀ କରି ଯେତେଦିନ ଗଲେ ବି ଦିନେ ଧରା ପଡ଼ିବ । ଧରା ପଡ଼ିଲେ କେଉଁଠିକି ଛୁଟି ଘରକୁ ଫେରି ପଳାଇବାର ପାଦ ଦବାକୁ ବାଧ । ସେମିତି ଗୁଣାକର ଶ୍ୱଶୁର କଥାଶୁଣି କହିଲା ଆମେ ଯିବାର କିଛିଦିନ ପରେ ସୌଦାମିନୀର ଗର୍ଭସଞ୍ଚାର ହେବାରୁ ତାକୁ ଛାଡ଼ି ଆଉ ଆସି ପାରିନାହିଁ । ଅଳକା ତାର ପୁଅଟିଏ ଜନ୍ମ ହୋଇଚି । ମା’ ପୁଅ ଦୁହେଁ ଭଲରେ ଥିବାରୁ ଖବରଟା ଦେବାକୁ ଆସିଅଛି । ଗୁଣାକର ଭାବିଥିଲା ସୌଦାମିନୀକୁ କୂଅରେ ପକାଇ ମାରି

ଦେଇଛ । ସେ କଥା ଶାଶୁ ଶ୍ୱଶୁର ଜାଣିବେ କାହିଁ ? ଅବକାପୁଅ ହୋଇଛ କହିଲେ, ନାତି ହବା ଶୁଣି ଖୁସିହୋଇ ତା ପାଇଁ ଓ ସୌଦାମିନୀ ପାଇଁ ନୂଆ ନୂଆ ଅଳଙ୍କାର ଦେବେ । ତାହା ପାଇଲେ ପୁଣି କଷ୍ଟ ନଷ୍ଟ ଭିତରେ ଚଳିଯିବ । ଏହା ଭଲ କି ମନ୍ଦ ମିଛକଥା କହିଥିଲ ? ହେଲେ ସୌଦାମିନୀ ଯେ ଉଦ୍ଧାର ହୋଇ ଆସି ଏଠାରେ ଅଛି, ସେ କଥା ଜାଣିବ କାହିଁ ? ଶ୍ୱଶୁର ପାଖରେ ଯେମିତି ଭୁଛା ମିଛ କଥାଟା କହିଦେଲ, ଶ୍ୱଶୁର କିଛି ନ କହି ତାଙ୍କୁ ସାଙ୍ଗରେ ନେଇ ଏକବାରେ ସୌଦାମିନୀ ପାଖରେ ପହଞ୍ଚାଇ ଦେଇ କହିଲେ, ପୁଅକୁ ଟିକଏ ତା ପାଖରୁ ନେଇ ଧର ।

ଗୁଣାକର ଯେମିତି ସୌଦାମିନୀଙ୍କ ଦେଖିଲେ ଏକବାରେ କଳା କାଠ ପରି ହୋଇଗଲେ । ସୌଦାମିନୀ ଗୁଣାକରଙ୍କୁ ଦେଖି ଅବାକ । ଶାଶୁ ଥରବର ହୋଇ ନୂଆଁଙ୍କ ଚର୍ଚ୍ଚା କରିବାକୁ ଲାଗି ପଡ଼ିଲେ । ଗୁଣାକର କିଛି କହିପାରୁ ନଥାଏ । କିପରି ସେ ଜାଗାରୁ ପଳାଇ ଯିବା ବାଟ ଖୋଜୁଥାଏ । ତା'ର ଏପରି ଅବସ୍ଥା ଦେଖି ସୌଦାମିନୀ ବୁଝିପାରିଲେ ଯେ ତାଙ୍କୁ ଦେଖି ଭୟରେ ସେ ଏପରି ହୋଇଯାଉଛି । ସେଇଠୁ ସେ ଗୁଣାକରଙ୍କୁ କାକୁତି ମିନତି କରି କହିଲେ ନାଥ ! କିଛି ଡର ଭୟ କରନା, ତୁମେ ଯେ ମୋତେ କୂଅକୁ ଠେଲିଦେଇ ମାରିଥିଲ ସେ କଥା ମୁଁ କାହା ପାଖରେ କହି ନାହିଁ । ତୁମେ ନିଶ୍ଚିନ୍ତ ହୋଇ ରୁହ ।

ହେଲେ ଚୋରର କାନରେ କି ଏ କଥା ପଶେ । ଧର ଧର ଶବ୍ଦ ଶୁଣିଲେ ଚୋର ଯେମିତି ଲୁଚି ପଳେଇବା ବାଟ ଖୋଜେ । ଗୁଣାକର ସୌଦାମିନୀର କଥା ଶୁଣି କହିଲା, ମୁଁ ଏଠାରେ ଆଉ ରହିବାକୁ ପାରିବି ନାହିଁ । ଘରେ ବହୁତ ଜରୁରୀ କାର୍ଯ୍ୟ ପଡ଼ିଛି । ଆଜି ଏଠାରୁ ମୋତେ ଯିବାକୁ ହବ । ଏହା ଶୁଣି ସୌଦାମିନୀ କହିଲେ—ତୁମେ ଯଦି ଯିବ ମୁଁ ଆଉ ଏଠି କାହିଁକି ରହିବି ? ତୁମ

ସଙ୍ଗରେ ଚାଲିଯିବ ! ଏହା କହି ସେ ଯାଇ ବିଦ୍ୟାଧର ସୌଦାଗରଙ୍କୁ କହିଲା, ବାପା ! ମୁଁ ଆଜି ସ୍ୱାମୀଙ୍କ ସଙ୍ଗରେ ଚାଲିଯିବି । ବିଦ୍ୟାଧର ସେତେବେଳେ ବଡ଼ ଗୋଟିଏ ବଣିଜ ଜିନିଷ ନେଇ ଅନ୍ୟ ଜାଗାକୁ ବାହାରୁଥିଲେ । ସୌଦାମିନୀ କଥା ଓ ଜୋଇଁଙ୍କ ବ୍ୟବହାର କଥା ଶୁଣି ରାଗରେ କହିଲେ ମୋର ଲେଉଟିବାକୁ ପାଞ୍ଚଦିନ ଡେରି ହେବ, ସେ ଯାଏ ଯଦି ନ ରହି ପାରୁଛ ଚାଲିଯିବ, ମୋତେ ଆଉ ପଚାରୁଛ କ'ଣ ? ବାହାହେଲା ଝିଅ ଉପରେ ମୋର କୋଉ ଦାବୀ ଅଛି ଯେ ଅଟକେଇବି । ଏହା କହି ସେ ବାହାରିଗଲେ ।

ଏଣେ ସୌଦାମିନୀ ଜାଣେ ନାହିଁ, କ'ଣ ଗୁଣାକର ଆସି କହିଛି, ସେ ପତିବ୍ରତା ନାରୀଙ୍କ ପରି ସ୍ୱାମୀସେବାକୁ ଧର୍ମ ମନେ କରି, ଯାଇ ମା'ଙ୍କ ପାଖରେ ଆଜି ଯିବା କଥା କହିବାରୁ ସିଏ ଟିକିଏ ମନେଇ ନୋଇ ଝିଅକୁ ନୂଆ ନୂଆ ଭୂଷଣ ପହରଣ ଦେଇ ବିଦାୟ ଦେଲେ । ଗୁଣାକର ସୌଦାମିନୀ ଦେହରେ ପୁଣି ନୂଆ ନୂଆ ଅଳଙ୍କାର ଦେଖି ଖାଲି ଝକଝକ ହେଉଥାଏ, କେମିତି ସେତିକ ନେଇ ପଳେଇବ । ଖାଲି ଭାବି ହଉଥାଏ 'ଅଜଗରକୁ ଦାତା ରାମ' କଥା । କହୁଥାଏ ଏଥର ବଢ଼ିଆ ଗହଣା ଆଣିଛ । 'ଯିଏ ଖାଏ ଚଣା, ତାକୁ ଯୋଗାଏ ଚିନ୍ତାମଣି' ଚାଲୁ ମାଇକିନା ବାଟକୁ ଆସ । ଏମିତି ଭାବି ସୌଦାମିନୀକି ସାଙ୍ଗରେ ନେଇ ଯାଉ ଯାଉ ବାଟରେ ସଞ୍ଜ ହେଲା । ରାତିରେ ତ ଯାଇ ହେବ ନାହିଁ । ସେଇଥିପାଇଁ ପାଖରେ ଥିବା ଗୋଟିଏ ଘରଦୁଆରରେ ଯାଇ ରାତିଟା ରହିଯିବାକୁ କହିବାରୁ, ସେଠାକାର ମାଲିକ ରାଜି ହୋଇ ଗୋଟିଏ ଘର ତାଙ୍କୁ ରାତିକ ପାଇଁ ଛାଡ଼ିଦେଲେ ।

ରାତି ହେବାରୁ ବିଦେଶୀ ଲୋକ ଦୁଇଟି ଆସିଛନ୍ତି ସେତେ-ବେଳେ ଉପାସ ରହିବେ କାହିଁକି ? ଏଣୁ ବୋହୂଙ୍କ ରୁ ମଧ

ଖାଇବାର ସୁବିଧା କରି ବିଛଣା ଲୁଗା ଦେଇ ତାଙ୍କୁ ରଖାଇ ଦେଲେ ଗୁଣାକର ଅନେକଦିନ ପରେ ସୌଦାମିନୀକୁ ପାଇବାରୁ ବେଶ୍ ହସ୍ ବିହାର୍ କରି କଟାଇ ଦେଲା । କେତେବେଳ ପରେ ସୌଦାମିନୀ ଶୋଇପଡ଼ିଲା ନିଦରେ । ସେଇଠୁ ଗୁଣାକର ଭାବିଲା, ଏହା ହେଉଛି ସୁଯୋଗ । ସେଥର ସିନା କୁଅକୁ ପେଲି ଦେଇ ଗଲି ବୋଲି ବଞ୍ଚିଗଲା । ଏଥର ଏକବାର ଜୀବନରୁ ମାରିଦେଲେ ଦଫା ଯିବ । ଏହାଭାବି ସେ ଗୋଟାଏ ବଡ଼ ଛୁରି ବାହାର କରି ଆଣି ଶିଳରେ ଘଷି ଧାରଦେଇ ନେଇ ମାରିବାକୁ ଗଲାବେଳେ, ଅନ୍ଧାର ଘରେ ଗୋଟାଏ ତେଲକଳସୀକୁ ହାବୁଡ଼ି ପଡ଼ିଲା ସେ କଳସୀଟି ଭାଙ୍ଗି ତେଲସାକ ଖେଳିଗଲା ଘରମୟ । ସେଥିରେ ଗୋଡ଼ ଖସରି ଯିବାରୁ ଗୁଣାକର ପଡ଼ିଗଲା ଦୁମ୍‌କରି । ସେ ଆବାଜ ପାଇ ସୌଦାମିନୀ ଜାଗି ଉଠିଲା । ପାଖଘର ସୁଖୀଆ ସ୍ୱକରଠାରୁ ଘୁଷ ଆଉ ସେଠାରେ ମେନେଜର ସ୍ୱେର ଆସିଛି ଭାବି ଆଲୁଅଧରି ଛୁଟି ଆସିଲେ । ଆସି ଦେଖିଲା ବେଳକୁ, ଗୁଣାକର ଯେତେଥର ଉଠୁଛି ସେତେଥର ପଡ଼ିଯାଉଛି । ହାତରେ ଅଛି ଗୋଟିଏ ଧାରୁଆ ଛୁରି । ତେଣେ ସୌଦାମିନୀ କଦଳୀପତ୍ର ପରି ଥରୁଛି । ତାକୁ ସ୍ୱେର ସ୍ୱେର କହିବାରୁ ଘୁଷମାନେ ନର୍ଘାତଆ କରି ଛେଚିଦେଲେ । ତାଙ୍କୁ ତ ମାର୍ ବୋଇଲେ ମମତା ନ କରି ମାରିବାର ପ୍ରତିଯୋଗିତା ଚଳାନ୍ତି । ତାଙ୍କର ଆଗେ ମାଡ଼ ପଛେ ଜବ୍ବର । ଆଗେତ ସିଏ ମରିବେ, ପଛେ ବୁଝିବେ ଅଭିଯୋଗକେ । ଯେମିତି ସେମାନେ ଗଣାଗଣି ନ କରି ଟାଣି ଓଟାରି ଚଲେଇ ଦେଲେ ବିଧା ଖୁପୁଡ଼ା, ଗୋଇଠା । ଗୁଣାକର ମରିଗଲି ମରିଗଲି କହି ଯେବେ ବିକଳ ହେଲେ ଶୁଣୁଛି କିଏ ? ମାଡ଼ର ଝିଙ୍କ କ ବାଉଁ ମାନେ । ବାଡ଼େଇ ବାଡ଼େଇ ଗୁଣାକରକୁ ମୂର୍ଚ୍ଛା କରି ପକେଇଦେଲେ । ସୌଦାମିନୀ ଆସି ହାତଯୋଡ଼ି କହିଲା, ଥାଉ

ଆଉ ମାର ନାହିଁ । ସେ ଚୋର ନୁହେଁ, ମୋ ସ୍ୱାମୀ । ସ୍ୱାମୀ ବୋଲି କହିବାରୁ ଗ୍ରହମାନେ ଗୁଣ୍ଡିଗଲେ । ସୌଦାମିନୀ ବହୁ ବହୁ ଗୁଣାକରର ଚେତା ଆଣିଲା । ଗୁଣାକର ସୁସ୍ଥ ହେବାରୁ ସୌଦାମିନୀ କହିଲା, ସ୍ୱାମୀ ! ଏଇ ଗହଣା ଲୋଭରେ ସିନା ତୁମ୍ଭେ ମୋତେ ମାରୁଥିଲ, ଏଇ ସେତକ ମୁଁ ଦେଇ ଦେଉଛି ନେଇ ଯାଅ । ମୁଁ ଆଉ ତୁମ ସଙ୍ଗରେ ଯିବି ନାହିଁ । ଏହା କହି ସେ ଗହଣାପାଳି ଉତାରି ଗୁଣାକରକୁ ଦେଇ କୁହାଉଟିଏ ହେଇ ବିଦାୟ ନେଲା ।

'ତପସ୍ୱିନୀ ବେଶଧରି ଚଳେ ପଶ୍ରବାଳା
ତନୁସାରେ ପଡ଼ିବନ ଅତନୁ ଜ୍ୱଳନା ।
ଫୁଟି ଲୁଟେ ଘନକେଶ ପିଠିରେ ଦୋଳି,
ବିରକତ ଆଣେ ମୁଖେ ଚୂନ କେଶ ଚଳି ।
ଆଳି ମାଂସ ଅତି ନତମ୍ବ ଦୁଏ ଗୁରୁଭାର,
ପଦକୁ ଓଟାରି ଭରେ ଚଳାଗତ ତା'ର ।
ଉଛତ ଉରଜ ଭରେ ବୁକୁ ଟଳେ ଆଗେ,
ବିଷମ ସମସ୍ୟାପରି ଗତି ତାକୁ ଲାଗେ ।
ଗେରୁଆ ବସନ ତନୁ ଝଳି ବଢେ ରୂପ;
ଛଉ ବୈରାଗୀ ଯୋଗୀକୁ କରଇ ଲୋଲୁପ ।
ଏକାଳେ ବନ ପଥେ ଚଳେ ସୌଦାମିନୀ
ମୁଖେ ବୋଲେ ନାରାୟଣ ନାରାୟଣ ବାଣୀ ।
ଏପରି କରି ସେ ଗିରିପଥେ ଚଳେ ବାଳା,
ଝରଜଳ ଫଳମୂଳ ଆହାର କୃଶଳା ।
ଏଭଳି ଚଳନ୍ତେ ଦିନେ ସନ୍ଧ୍ୟା ସମୟରେ,
ପଡ଼ିଲା ସେ ତପସ୍ୱିନୀ ଶବର ନଜରେ ।
ଜାତିରେ ନିଷାଦ ନଣାଖାପ୍ରି ନଣାକାଳେ,
ନଳୀଣ ମୁଖୀରୂପସୀ ଦେଖି ଲୋଭକଳେ ।

ଗୋଡ଼ାଇଲା ପଛେ ତା'ର ଧନୁଶର ଧରି
ତାର ଆକ୍ରମଣ ଦେଖି ପଳାଇଲା ଗୋଷ୍ଠୀ ।
ତରସା ହରିଣୀ ପରି ତରୁଣୀ ଜନ୍ମନା
ଅବାଟେ ଦଉଡ଼ି ଯାଏ ଅତି ଖ୍ରୀତମନା ।
ଘୋର ଅନ୍ଧାର କାନନ ପଥ ଯେ ଅଗମ୍ୟ
ଖଣ୍ଡିବ ଏଡ଼େ ରୂପସୀ ହଜାଇ ଚେତନ ।
ଗଭୀର ଏକ କୂପରେ ପଡ଼ଇ ତରୁଣୀ ।
ଖୋଜି ନପାଏ ଶବର କାହିଁ ସେ ରମଣୀ ।

ଶବର ଯେମିତି ଆଉ ସୌଦାମିନୀକ ଦେଖି ନପାରିଲା, ଭାବିଲା ମାପିନେଲ୍କଟା ବନଦେବୀ ହେବ ବୋଧେ । ନୋହିଲେ ପଛେ ପଛେ ମୁଁ ଆସୁଛି, ଲୁଚିଗଲା ସେ କୁଆଡ଼େ ସେ । ଏହା ଭାବି ସେ ଲେଉଟି ଗଲା । ଏଣେ ଗୋଟାଏ କୂଅରୁ ଉବୁରି ପୁଣି ଗୋଟିଏ କୂଅରେ ପଡ଼ିବାରୁ ସୌଦାମିନୀର ଟିକିଏ ସାହସ ବଢ଼ି ଯାଇଥାଏ । ସେ କୂଅରେ ଅଳ୍ପପାଣି ଥିବାରୁ ଗୁଡ଼ିଏ ପାଣିରେ ଠିଆହୋଇ ନାରାୟଣ ନାରାୟଣ ଡାକୁଥାଏ । ସୌଦାମିନୀ ପଣ୍ଡିତଗର୍ଭରୁ ଓ ଋଷିଙ୍କ ଔରସରୁ ଦେବଅଂଶ ନେଇ ଜନ୍ମ ହୋଇଛି । ପୁଣି କେତେ ଦିନ ଧରି ତପସ୍ୟା କରିବାରୁ ତାର ପ୍ରତିଭା ବଢ଼ି ଯାଇଥାଏ । ସେ ଯେଉଁ କୂଅରେ ପଡ଼ିଲା କୂଅରେ କେଉଁଯୁଗରୁ କେଜାଣି ଗୋଟାଏ ଭୂତ ଅଛି । ସୌଦାମିନୀ ସେ କୂଅରେ ପଡ଼ିବାରୁ ତା ତେଜରେ ଭୂତଟା ଛଟପଟ ହୋଇ ବାହାରିପଡ଼ିଲା । ଭୂତ, ବ୍ରହ୍ମରାକ୍ଷସ' ବୈତାଳ ଓ ପ୍ରେତ ଏମାନେ ତ ବ୍ରହ୍ମତେଜ ସହି ପାରନ୍ତି ନାହିଁ, ସ୍ୱା ତେଜରେ ଭୂତର ଦେହ ଜ୍ୱାଳା କରିବାରୁ ସେ ବାହାରି ଆସି ସୌଦାମିନୀକ କହିଲା ମା ! ତୁମେ ଦୟାକରି ମୋ ସ୍ଥାନରୁ ମୋତେ ଘଉଡ଼ା କରନାହିଁ । ମୁଁ ତୁମର କିଛି କ୍ଷତି କରିନାହିଁ କି କରିବି ନାହିଁ । ତୁମେ ଏଠାରୁ ଚାଲିଯାଅ । ମୁଁ ତୁମ ତେଜରେ ଏଠି ରହିପାରୁନ ।

ଭୂତର ଏପରି କଥାଶୁଣି ସୌଦାମିନୀ ତା କଥାରୁ ତା ଘର ବୁଝି କହିଲା ମୁଁ ଏଇ ନିର୍ଜନ କୂଅକୁ ତପସ୍ୟା କରିବାକୁ ଆସିଛି । ଅନ୍ୟଜାଗାରେ ବସି ତପସ୍ୟା କଲେ ରୂପଲୋଭୀ ବଦମାସ ମାନେ କଣ୍ଟାଳ କରିବେ । ତା କଥା ଶୁଣି ଭୂତ କହିଲା, ନାଇଁ ମା । ତୁମେ ଏଠାରୁ ଚାଲିଯାଅ । ମୁଁ ତୁମକୁ ଗୋଟାଏ ସନ୍ଧାନ କହି ଦେଉଛି । ତୁମେ ସେଠାକୁ ଯାଇ ଧନରତ୍ନ ସବୁ ଉଠାଇ ସେଇ ଜାଗାରେ ଜୁଆସଟିଏ ତୋଳାଇ, ଚୌକିଦାର ପହରାବାଲା ଜଗେଇ ଭିତରେ ତପସ୍ୟା କର । ଏ କଥାରେ ସୌଦାମିନୀ ରାଜି ହେବାରୁ ଭୂତ କହିଲା, ଏଇ କୂଅ ପାଖରେ ବରଗଛତଳେ ଅନେକ ଧନରତ୍ନ ରହିଛି । ଦକ୍ଷିଣପାଖ ଡାଳରୁ ଯେଉଁ ଓହଳଟିଏ ଆସି ଭେଦିଛି, ସେଇ ଜାଗାରେ ଖୋଳିଲେ ଦଶଗରା ସୁନା ମୋହର ପାଇବ । ହେଲେ ତାକୁ ସେମିତି ଖୋଳିଲେ ମିଳିବନାହିଁ । ବରଗଛର ଉତ୍ତରପାଖ ଡାଳରୁ ଯେଉଁ ଓହଳଟା ଆସି ମାଟିରେ ଭେଦକରିଛି ସେଇଠି ଅଳ୍ପବାଟ ଖୋଳିଲେ ଗୋଟିଏ ଖଣ୍ଡା ମିଳିବ ସେଇ ଖଣ୍ଡା ଆଣି ଏ ଜାଗାରେ ଖୋଳିଲେ ଅଳ୍ପ ଦୂରରେ ସେ ମୋହର ଗରା ମିଳିବ । ନହେଲେ ଯେତେ ଖୋଳ ସେତେ ଗହୀରକୁ ଗରା ଦବିଯିବ । ଭୂତ ଏକଥା କହିବାରୁ ସୌଦାମିନୀ କହିଲା ଆଗେ ଏ କୂଅରୁ ଉଠିଯିବାର ଉପାୟ କୁହ । ସେଇଠୁ ଭୂତ ଉପରକୁ ଆସି କେଉଁଠୁ ଏ ନଇଲଟା ଆଣି ଦଉଡ଼ିଟିଏ କରି ସେ ବର ଡାଳରେ ବାନ୍ଧିଆଣି କୂଅଭିତରକୁ ପକେଇଦେଲା ।

ସୌଦାମିନୀ ସେଇ ଦଉଡ଼ିକୁ ଧରି ଧରି ଆସି ଉପରେ ପହଞ୍ଚିଲା । ତା'ପରେ ଖଣ୍ଡିଏ କାଠ ନେଇ ଉତ୍ତରପାଖ ଓହଳ ମୂଳରେ ଖୋଳିବାରୁ ଗୋଟିଏ ଦିବ୍ୟ ଖଣ୍ଡା ମିଳିଲା । ତାକୁ ନେଇ ସେ ଜାଗାରେ ଖୋଳିବାରୁ ମୋହର ଗରା ଦେଖାଗଲା । ସେଥିରୁ

ଗୋଟିଏ ମୋହର ଗଡ଼ ଉଠାଇ ଆଣି ବହସ୍ତ କଲା ସୌଦାମିନୀ ଗୋଟିଏ ପଥରର କୋଠା ତିଆରି କଲା । ଟଙ୍କା ହେବାରୁ କେତେ ଭକ୍ତ ଆସି ଯୁଟିଗଲେ । କ୍ରମେ କ୍ରମେ ସେ ଜାଗାରେ ଆସି ଲୋକମାନେ ଘରବାଡ଼ି ତିଆରି କଲେ । ସୌଦାମିନୀ ପରେ ସେ ଜାଗାରୁ ଆଉ ନଅଗଡ଼ ମୋହର ଉଠାଇ ଆଣି ସେଠାରେ ସହରଟିଏ ବସାଇଦେଲା । ନିତ ଦାନ ଧ୍ୟାନ କରିବାରୁ କୋଟି କୋଟି ଲୋକ ଯୁଟିଲେ । ଥରେ ଗୋଟିଏ ଧର୍ମଶାଳା ତିଆରି କଲାବେଳେ ଲୋକଙ୍କ ମୁହଁରୁ ଖବର ପାଇ ଗୁଣାକର ଯାଇ ସେ ଯାଗାରେ ଜୁଟିଲା । ସେତେବେଳକୁ ବାରମାସି କରି କରି ତା ହାଡ଼ ଝୁଣ୍ଡିଗଲାଣି, ଦେଖା ହୋଇ ବାଡ଼ି ଖଣ୍ଡିଏ ଧରି ମାଗିଖାଇ ଚଳୁଥାଏ । ସୌଦାମିନୀର ଦାନ କରିବା ଖବର ପାଇ ଯାଇ ସେଠାରେ ପହଞ୍ଚିବାରୁ ଟଙ୍କି ଆରାଧନ ଦାନକରିବା-ବେଳେ ଭିକାରୀଙ୍କ ମେଳରେ ସୌଦାମିନୀ ତାକୁ ଦେଖି ଚିହ୍ନି ଡକାଇନେଲା । ତା' ପରେ ତାଠାରୁ ତା'ର ଦୁଃଖ ଅବସ୍ଥା ଶୁଣି ତାକୁ ଗୋଟିଏ ନଅରରେ ବନ୍ଦୀକରି ରଖି ଧନୁ ଖଞ୍ଜା କରିଦେଲା । ଆଉ ସେଇ ଉଆସ ଫାଟକ ପାଖରେ ଦୁଇଟି ପଥର ମୂର୍ତ୍ତିଗଢ଼ି ରଖାଇଲା । ସେଥିରେ ଗୋଟିଏ ନାରୀ ମୂର୍ତ୍ତି ଆଉଟି ପୁରୁଷ ମୂର୍ତ୍ତି । ମଝିରେ ଗୋଟିଏ ପଥରରେ ଲେଖିଦେଲା—"ପୁରୁଷଜାତିଅବିଶ୍ୱାସୀ ତାଙ୍କୁ ବିଶ୍ୱାସ କରି କୌଣସି ନାରୀ ଚଳିବ ନାହିଁ ।" ବୁଝିଲୁରେ ଅବୋଲକରା । କେଉଁ ଯୁଗରୁ ସୌଦାମିନୀ ଗୁଣାକର ମରି-ଗଲେଣି । ସୌଦାମିନୀ ବସେଇଥିବା ସେହି ସହରଟା ଏଇଟା । ଏଥିରେ ସେ ନାରୀପୁରୁଷ ପଥରର ମୂର୍ତ୍ତି ଓ ଲେଖାଟି ସେହି ଯୁଗରୁ ଏଯାଏ ଅଛି । ଏତେ କଥା କଏ ଖବର ରଖିଚ ସେ ତୋତେ କହିବ ଅନା । ଏହା କହି ଗୋସେଇଁ ଖାଇବାକୁ ବଢ଼ା-ବଢ଼ି କଲେ ।

ମନୁଷ୍ୟର ପାନ୍ଥଶାଳା ଘର ସଂସାର
କେତେ ଯାଇ ଆସୁଛନ୍ତି ଠିକ ନାହିଁ ତାର ।
ଏକ ଯାଇ ଏକ ଆସି ଏଥେ ରହୁଛନ୍ତି
ଯେ ଯାର କାର୍ଯ୍ୟ କରଣ ଧାଇଁ ବାହୁଡନ୍ତି ।
ଯେପରି ସୁବାସ ଫୁଲ କାନନ ଭିତରେ
ଫୁଟି କେତେ ଲେଉଟେ ସୁଖେ ଲୋକ ଅଗୋଚରେ ।
ସେପରି କେତେ ମହତ ଜନ ଗତାଗତ
କରୁଛନ୍ତି ଇତିହାସ ନ ଜାଣେ ତା ତଥ୍ୟ ।
'ଧଣ କାହିଁ ମଣାବଟି' ଯେଣୁ ଏ ନଗର
ଶୁଣାଇ ରଖିଛୁ ସୌଦାମିନୀର ଖବର ।
ପତିବ୍ରତା ଗୁଣେ ହୁଏ ମନସ୍ୱୀ ନାରୀ
ଅଭସ୍ମ ହେଷେ ଏ କଥା ପ୍ରମାଣ ତାହାରି ।



## ପଣ୍ଡିତ ମୂର୍ଖ କଥା

ବିଶ୍ୱାସଘାତକ ପୁରୁଷ କଥା ଶୁଣି ଅବୋଲକରା ତହିଁଆରଦିନ ବୋଝକୁ ଧରି ଖୁସିମନରେ ଯାଉଥାଏ । ଗୋସେଇଁ ଆଗେ ଆଗେ ଯାଉଥାନ୍ତି । ଯାଇ ଯାଇ ସେମାନେ ମଣିଭଦ୍ର ବୋଲି ଗୋଟିଏ ଜାଗାରେ ପହଞ୍ଚିଲେ । ସେଠାରେ ଗୋଟିଏ ମନୋରମ ପୋଖରୀ, ତା' ପାଖରେ ଧର୍ମଶାଳା ଓ ବାରି ବଗିଚା ଦେଖି ଗୋସେଇଁ ଅବୋଲକରାକୁ କହିଲେ, ଆଜ ରାତିଟା ଏଠି ରହି କାଲି ଯିବା । ତୁ ଗୋଟିଏ ଟଙ୍କା ନେଇ ଯା, ଚାଉଳ, ଡାଲି ଓ ପରିବା କିଛି କିଣି ଆଣେ । ଏହା କହି ଗୋସେଇଁ ଅବୋଲକରାକୁ ଟଙ୍କାଟିଏ ଦେବାରୁ ସେ ଗଣ୍ଠିଲି ବୋଝକୁ ଥୋଇ ବଜାର ଆଡ଼େ ଗଲା । ସେ ଯାଉଯାଉ

ଏ ଜାଗାରେ ବିଶିଷ୍ଟଦୃଶ୍ୟ କଣ ଅଛି ଜାଣିବାକୁ ବାରଲୋକଙ୍କୁ ପଚାରି ଯାଉଥାଏ । ଶେଷରେ ଜଣେ ଲୋକ କହିଲା, ବଜାରରୁ ଲେଉଟିଲା-ବେଳେ ଦକ୍ଷିଣ ବାଟ ଦେଇ ଆସିବ ଯେ ଗୋଟିଏ ସୁନ୍ଦର ଚଉରା ଦେଖି ଆସିବ ।

ଏ କଥା ଶୁଣି ଅବୋଲକରାର କୌତୂହଳ ବେଶି ବଢ଼ିବାରୁ ସେ ଯାହା ତାହା କରି ସଉଦା ଡାଲି ପରିବା ଘେନି ହାଟରୁ ଦକ୍ଷିଣ ବାଟ ଦେଇ ଲେଉଟିଲା । ଆସୁ ଆସୁ ଦେଖିଲା, ବାଟ ପାଖରେ ଗୋଟିଏ ଚାନ୍ଦମା ଚଉରା ଅଛି । ସେ ଚଉରା ଚାନ୍ଦମାରେ ଲେଖା ହୋଇଛି "ପଣ୍ଡିତ ମୂର୍ଖଙ୍କର ସ୍ମାରକୀ" ! ଚାନ୍ଦମାଟାର ଚାରିପାଖ ଲୁହାବାଡ଼ ଦେଇ ଘେରା ହୋଇଛି । ସେଇଠୁ ଅବୋଲକରା ତରବର ହୋଇ ଆସି ଧର୍ମଶାଳାରେ ସଉଦାପାତି ଥୋଇଦେଇ ଦୂମକରି ବସିପଡ଼ିଲା । ତା'ର ଏପରି ବସିବାର ବାଗବର୍ଗ ଦେଖି ଗୋସେଇଁ ପଚାରିଲେ କ'ଣ ହେଲା କରେ ?

ଅବୋଲକରା ମୁହଁ ଟେରା ଟେରା କରି କହିଲା ମୁଁ ହାଟରୁ ଆଇଲାବେଳେ ବାଟରେ ଦେଖିଲି ଗୋଟିଏ ଚଉରା ଚାନ୍ଦମାରେ ଲେଖା ଅଛି—"ପଣ୍ଡିତ ମୂର୍ଖଙ୍କ ସ୍ମାରକୀ ।" ଲୋକେ କହୁଛନ୍ତି, ବହୁତ ଦିନରୁ ଅଛି । ତା'ର କାରଣ ଜାଣନ୍ତି ନାହିଁ । ତା'ର କାରଣ ନ ବତେଇଲେ ମୁଁ ତୁମ ସାଙ୍ଗରେ ଆଉ ଯିବି ନାହିଁ । ମୋ ବାଟ ମୋର, ତୁମ ଗଳି ତୁମର । ତା କଥା ଶୁଣି ଗୋସେଇଁ ଭାବିଲେ, ଗଣ୍ଡିପୁଅକୁ ଆଣି ତ ଭୁଲ କରିଛି । ଏଷଣି ଛାଡ଼ିଦେଲେ କଣହେବ ? ଏହା ଭାବି କହିଲେ, ଗୋଡ଼ହାତ ଧୋଇ ଆସି ବସ । ବୋଷେଇ କରୁଥିବା ଗପ କହୁଥିବା । ତାହାଶୁଣି ଅବୋଲକରା ଗାଧୋଇ ଆସି ଥଣ୍ଡା ହୋଇ ବସିବାରୁ ଗୋସେଇଁ କହିଲେ—ଉଷ୍ଟ କମ୍ବଳ ବସପୂଡା, ଶୁଣ ପଣ୍ଡିତ—ମୂର୍ଖର କଥା । ଅବୋଲକରା ଖୁସି ହୋଇ ବସିବାରୁ ଗୋସେଇଁ କହିଲେ—

ସେଇ ପୋଖ ବଜାରଟି ଦେଖି ଅଇଲୁ, ପୂର୍ବକାଳରେ ସେ ଗୋଟିଏ ବ୍ରାହ୍ମଣ ଶାସନ ଥିଲା । ସେଠାରେ କେତେକ ପାଠୂଆ ଅପାଠୂଆ ବ୍ରାହ୍ମଣମାନେ ମିଶି ରହୁଥିଲେ । ଥରେ ତାଙ୍କ ଭିତରୁ ନନ୍ଦ, ମୁକୁନ୍ଦ, ଗୋବିନ୍ଦ, ଆନନ୍ଦ ନାମରେ ଚାରୋଟି ଦଶ ଏଗାରବର୍ଷିଆ ବାଳକ ମିତ ବସି ବିଚାର କଲେ କଣ କରିବା । ଆମ ବାପାଏ ତ ଋଷିକୁଳିଆ ବ୍ରାହ୍ମଣ । ସିଦ୍ଧି ମନ୍ତ୍ରସ୍ଥାନ, ଚନ୍ଦ୍ରଚନ୍ଦ୍ର ମିଶ୍ର ଆମକୁ ଏଇ କାଳରୁ ନେଇ ଚାଲି ବାଡ଼ି ମଡ଼େଇଲେଣି । ଆମେ ସିନା ଚାରି ପରି ହୋଇ ଉଠିବା । ଏ କଥା ଶୁଣି ଜଣେ ମିତ କହିଲା ଆମେ ତ ବ୍ରାହ୍ମଣ ପିଲା, ଚାଲ ଲୁଚିକରି ଘରୁ ପଳେଇଯାଇ ମାଗି ଯାଚି ଖାଇ ଦୂରଦେଶକୁ ଯିବା ଯେଉଁଠି ସୁବିଧା ଯୁଟିବ ଦେଖି ପଢ଼ିବା । ତା ଯୁକ୍ତିଟା ସମସ୍ତଙ୍କ ମନକୁ ପାଇବାରୁ ସେ ଦିନେ ରାତିରୁ ଉଠି ଚାରିମିତ ଯାକ ଘରଛାଡ଼ି ପଳେଇଲେ । ତହିଁ ଆରଦିନ ବାପ ମା ସେତେ ଖୋଜା ଲୋଡ଼ା କଲେ ପାଇଲେନାହିଁ । ଜଣେ ପ୍ରବୀଣ ଲୋକ କହିଲେ, ଚାରିଜଣ ମିଶି ଯାଇଚନ୍ତି ସେତେବେଳେ ଖୋଜିବାର ବା ଭୟ କରିବାର କାରଣ ନାହିଁ । ତା' ଛଡ଼ା ଘରଛଡ଼ା ସର୍ବହରାମାନେ ଜୀବନରେ କିଛିନା କିଛି ଭଲକାର୍ଯ୍ୟ କରନ୍ତି ବୋଲି କଥା ଅଛି । ତାଙ୍କ କଥା ଶୁଣି ବାପ ମା ଆଉ ଖୋଜା ଲୋଡ଼ା କଲେ ନାହିଁ ।

ଏ ଚାରିମିତ ସେଠାରୁ ପଳେଇ ଯାଇ ଗୟାନ୍ତଦେଶରେ ପହଞ୍ଚି ସେଠାରୁ ଶିକ୍ଷାଳାଭ କରି ଯାଇ ବନାରସରେ ରହି ପୁଣି ନ୍ୟାୟ, ଦର୍ଶନ, ବେଦାନ୍ତ ତର୍କ ଆଦିରେ ଉତ୍ତୀର୍ଣ୍ଣ ହୋଇ ବଡ଼ପଣ୍ଡିତହେଲେ ନାନାଶାସ୍ତ୍ର ପଢ଼ି ପଣ୍ଡିତ ହେଲେ ସିନା, ହେଲେ ବିଷୟ ଜ୍ଞାନ ବୋଇଲେ କାହାର ଟିକିଏ ବି ନାହିଁ । ଏମାନେ ଘର କୋଣରେପଶି ପାଠଘୋଷି ଘୋଷି ପାସ୍ କରିବାରେବ୍ୟସ୍ତ । ଲୋକସମ୍ପର୍କ ନଥିବାରୁ

ବିଷୟଜ୍ଞାନ ଆଦୌ ପାଇ ନାହାନ୍ତି । ବିଷୟଜ୍ଞାନ ନଥିଲେ ସମାଜରେ ଖାଇ ଖିଆଇ ଚଳିବା କଷ୍ଟକର ବ୍ୟାପାର । ତେଣୁ ଶାସ୍ତ୍ର କହୁଛି, ସଂସାରୀ ହୋଇ ସମାଜରେ ରହିବାକୁ ହେଲେ—

ଅଶ୍ୱସ୍ତି ବହୁଧର୍ମୈଷୀ ରାଜସେବାର୍ଥି ହୋଇ
କୃଷିପଣ୍ୟ ଧନବିଦ୍ୟା ବାଳକାମାଣି ଦାସ ।
ଗୁରୁ ରୋଗୀ ଖଳ ଦସ୍ୟୁ ଲୋକବାର୍ତ୍ତା ଜିଘ୍ରାଣଂ
କ୍ଷଣମପିନାବଧାନଂ ଜାୟତେ ନାଶ ହେତୁଃ ।”

ସଂସାରୀ ଲୋକ ଯଦି ଉପରୋକ୍ତ ବିଷୟ ପ୍ରତି ଦୃଷ୍ଟି ନ ଦେବ ତେବେ ସମାଜରେ ଚଳିବା କଷ୍ଟକର ହୋଇପଡ଼େ । ସେଗୁଡ଼ିକର ଜ୍ଞାନ ଏ ଚାରିଜଣଙ୍କ ପାଖରେ ଅଭାବ ହେବାରୁ ଏମାନେ ବିଷୟାଦି ପଣ୍ଡିତ ହୋଇ ବାହାରିଲେ । ଏମାନଙ୍କ ପଢ଼ା ଶେଷ ହୋଇ ଯିବାର ଦେଖି ଗୁରୁ ମହାଶୟ ତାଙ୍କୁ ବିଦ୍ୟାୟତନରୁ ବିଦାୟ କରିଦେଲେ । ଆସିଲାବେଳେ ଗୁରୁ କହିଲେ, ବାରବର୍ଷ ଧରି ତ ପାଠ ପଢ଼ିଲ, ଗଲାବେଳେ କେଉଁ ବିଦ୍ୟା ପଢ଼ି ଯାଇଚ, ସେଥିରୁ କିଛି ତର୍ଜମା କରି, ପ୍ରୟୋଗ କରି, ପରୀକ୍ଷା ନିରୀକ୍ଷା କରି, ବୁଝି, ସମଝି ଯିବାକୁ ଚେଷ୍ଟା କରିବ । ସେମାନେ ଗୁରୁ ଆଜ୍ଞା ମାନି ଚଳିବେ ବୋଲି ସ୍ୱୀକୃତି ଦେଇ ବାହାରିଲେ ।

ଯାଉଁ ଯାଉଁ ବାଟରେ ଗୋଟାଏ ଜଙ୍ଗଲ ପଡ଼ିଲା । ସେଟା ପାର ହୋଇଯିବା ପରେ ଦେଖିଲେ, ଦୂରରେ ଗୋଟାଏ ଗାଁ ଦିଶୁଚି । ସେଇଠି ଗୋଟିଏ ଚଉଛକି ରାସ୍ତା ଅଛି । ବାଟଟି ଚାରି ଦିଗକୁ ପଡ଼ିଥିବାରୁ ଏ ଚାରି ପଣ୍ଡିତ ସେଇଠି ଛିଡ଼ା ହୋଇ ଭାବି ହଉଛନ୍ତି, କୋଉ ବାଟରେ ଲୁଆଡ଼େ ଯିବେ । ଏହି ସମୟରେ କେତେଜଣ ଲୋକ ଗୋଟିଏ ଶବ କାନ୍ଧେଇ ଆଗ ଗାଁରୁ ଦାହ କରିବାକୁ ବାହାରିଲେ । ସେମାନେ ହରିବୋଲ ଦେଇ ଶ୍ମଶାନକୁ ଯାଉଥିବାରୁ ଭାବି ହେଉଥିବା ପଣ୍ଡିତଙ୍କ ମଧ୍ୟରୁ ଜଣେ କହିଲା,

ଭାବିବାର କିଛି ନାହିଁ । ଏମାନେ ହରିଧ୍ୱନି କରି ମହତକାର୍ଯ୍ୟ କରିବାକୁ ଯାଉଛନ୍ତି । ଏମାନେ ମଣ୍ଡଳୀକ ମହାଜନ । ଶାସ୍ତ୍ର କହୁଛି—'ମହାଜନୋ ଯେନ ଗତଃ ସ ପନ୍ଥା' ଏମାନେ ଯେଉଁ ବାଟେ ଯାଉଛନ୍ତି ଆମେ ସେହି ବାଟରେ ଯିବା । ଏତେ ଭାବିବାର ବା ପଚାରିବାର ଦରକାର ନାହିଁ । ତାଙ୍କ ପ୍ରସ୍ତାବଟା ସମସ୍ତଙ୍କ ମନକୁ ପାଇବାରୁ ସମସ୍ତେ ସେହି ଶବ ବୁହାଳଙ୍କ ପଛରେ ଯାଇ ମଶାଣି ପଦାରେ ପହଞ୍ଚିଲେ ।

ମଡ଼ାପୋଡ଼ାଳିଏ ମଡ଼ାଟାକୁ ପୋଡ଼ିବାର ଯୋଗାଡ଼ କରୁଥାନ୍ତି । ଏ ପଣ୍ଡିତମାନେ ଛିଡ଼ାହୋଇ ଆବାକାବା ହେଉଥାନ୍ତି ସେଇ ପଦାରେ ଭାବୁଥାନ୍ତି ଏ ଲୋକଗୁଡ଼ାକ ମହାଜନ ହେଲେ କଣ ହେବ, ସୁଧୀଜନର ବ୍ୟବହାର ଜାଣନ୍ତି ନାହିଁ । ଏହିପରି ହେଉଛନ୍ତି, ଏହି ସମୟରେ କୋଉଠିଏ ଧୋବାର ଗଧ ଆସି ଏମାନଙ୍କ ଆଗରେ ପହଞ୍ଚି ସ୍ୱାଙ୍କ ମୁହଁକୁ ଅନାଇଲା । ବିଚରା ଗଧଟି ଭଲ ଚାଲିପାରୁନି । ପଛ ଦି' ଗୋଡ଼ ବନ୍ଧା ହୋଇଛି । ତାକୁ ଦେଖି ପଣ୍ଡିତ କହିଲେ,
ପଛ ଦି' ଗୋଡ଼ ବନ୍ଧା ହୋଇଛି । ତାକୁ ଦେଖି ପଣ୍ଡିତ କହିଲେ,
ଏକ ଆମର ପ୍ରକୃତ ବନ୍ଧୁ! ଶାସ୍ତ୍ର କହୁଛି—

ରାଜଦ୍ୱାରେ ଶ୍ମଶାନେ ଚ ଯଃ ତିଷ୍ଠତି ସ ବାନ୍ଧବଃ ।

ରାଜଦ୍ୱାରେ ବା ଶ୍ମଶାନରେ ଯିଏ ଆସି ପାଖରେ ଛିଡ଼ାହୁଏ, ସେହି ପ୍ରକୃତରେ ବନ୍ଧୁ । ଏ ବିଚରା ଆସି ଶ୍ମଶାନରେ ଆମପାଖରେ ଛିଡ଼ା ହେଲାଣି ଯେତେବେଳେ, ଏହି ଆମର ହେଉଛି ବନ୍ଧୁ । ଏହାର ସେବା ଅଭ୍ୟର୍ଥନା କରିବା ଦରକାର । ଏହା ଭାବି ଯାଇ ଜଣେ ଆହା, 'ବନ୍ଧୁ ପଦ ବନ୍ଧନ', କହି ତା' ଗୋଡ଼ରୁ ଦଉଡ଼ାଟା ଖୋଲିଦେଲା । ଜଣେ ତାକୁ ଆଉଁସିଦେଲା । ଜଣେ ତା ଗୋଡ଼କୁ ଆଉଁସିଲା । ଏମିତି କରି ଚାରିବନ୍ଧୁ ବସି ଗଧର ସେବାରେ ଲାଗିଗଲେ । ଜଣେ ଆଗରେ ବସି ଗଧର ମୁହଁଟିକୁ ନୁଆଁଇ କୁଶଳ ବାର୍ତ୍ତା ପଚାରିଲାବେଳେ ଗଧଟା ଚମକି ଉଠିଲା । କଥାରେ ଅଛି—

'ମଠିଆ ନ ଉଠିଲେ ନାହିଁ, ଉଠେ ଯଦ ଭୋଟା ଚୋଟା ମାନେ ନାହିଁ । ଯେମିତ ଏ ସ୍ବର ପଣ୍ଡିତ ସ୍ବର ବଗଗୁ ବେଶର ତାକୁ ଆଉଁସି ନାନା କଥା ପଗ୍ଭରଲେ, ସେ ଚମକ ଉଠି ଭଉଁକର ଏ ସ୍ବରଜଣଙ୍କୁ ମଡ଼ାମଡ଼ୁ କର ଦୌଡ଼ିଲ । ତା'ର ଏପର ମୂଖ ବମ୍ନଖ ଭାବ ଦେଖି ପଣ୍ଡିତମାନେ ହଁ । ହଁ । ମହାଶସ୍ବ କହ, ତା ପଛରେ ଦୌଡ଼ିଲେ । ଦୂଃଖକର କହଲେ ମହାଶୟେ ! ଆମର ସେବାରେ କ'ଣ ତ୍ରୁଟି ହେଲ ନ କହ ଆପଣ ଏପର ରାଗି ପଳାଉଛନ୍ତ କାହିଁକ ? ଭବନ୍ତୁ, ଆମେ ଯଥାସାଧ ସେବା କରବୁ । ଯଦ ଆମର କନ୍ଥ ତ୍ରୁଟି ହେଲ କ୍ଷମା କରନ୍ତୁ । ଏପର କହ ତା ପଛରେ ଦୌଡ଼ିବାରୁ ଗଧଟା ଅଧିକ ବେଗରେ ଦୌଡ଼ିଲ ।

ଛେରେ ଏ ସ୍ବରଜଣ ଗଧଟାକୁ ଗୋଡ଼ାଇ ଥିବାର ଦେଖି ଜଣେ ଲେକ ଦୌଡ଼ିଯାଇ ଗଧର ମାଲିକ ଧୋବାକୁ କହଲ ଆରେ ସେଠିପୁଅ ! ତୋ ଗଧଟାକୁ ସ୍ବରଟା ଶ୍ବେର ଘୋଡ଼େଇ ନଉ-ଛନ୍ତରେ । ତା କଥା ଶୁଣି ଧୋବା ବ'ାଇ, ସ୍ବୀପୁଅ ମିଶି ଛଅଟା ଠେଙ୍ଗାଧର ଦୌଡ଼ିଲେ । ସେମାନେ ଠେଙ୍ଗାନେଇ ଯାଇ ସ୍ବର ପଣ୍ଡିତଙ୍କୁ ବ'ସ୍ବର ଭ୍ରାଙ୍ଗ କର କସିଦେବାରୁ ସେମାନେ ପଡ଼ିଗଲେ । ଅଣ୍ଟୁ ଗଣ୍ଠି ଛୁଡ଼ିଯିବାରୁ ଉଠ୍ଭକର ବସିଥିବା ରଜକମାନଙ୍କ ଉଗ୍ରମୂର୍ତ୍ତି ଦେଖି, ଶାସ୍ତ୍ରମତେ "କ୍ରୋଧମଞ୍ଜନ କର୍ମଣଃ", ପ୍ରଥାରେ ହାତଯୋଡ଼ କହଲେ—ହଁ । ହଁ । ଆଉ ବାଡ଼ାନ୍ତୁ ନାହିଁ । ଆମ୍ଭେ ଚସ୍ବର ନୋହୁ । ଶାସ୍ତ୍ରମତେ ଏ ଗର୍ଦ୍ଦଭ ମହାଶସ୍ବ ଆମ୍ଭର ବନ୍ଧୁ ଅଟନ୍ତି । ତେଣୁ ଆମ୍ଭେ ତାଙ୍କର ଅଭ୍ୟର୍ଥନା କରୁଥିଲୁ । ଏମାନେ ତ ଲୁଗା କାଚବାରେ ପଣ୍ଡିତ ଧୋବା, ଅଭ୍ୟର୍ଥନା ଶବ୍ଦରମାନେ ତାଙ୍କୁ ମାଲୁମ ନାହିଁ । ସେମାନେ କଥାର ମାନେ ବୁଝିନପାରି ଏ ସ୍ବରି-ଜଣଙ୍କୁ ଚଉକସିଆ କରି ବାନ୍ଧ ଓଟାରି ନେଇଗଲେ ।

ଉଦ୍ରଲୋକଙ୍କୁ ଧୋବା କାନ୍ଧିକ ବାନ୍ଧ ଆଣୁଛନ୍ତି ଜାଣିବାକୁ ବ୍ରାହ୍ମଣଶାସନରୁ କେତେଲୋକ ଦୌଡ଼ିଆସି ଘଟଣା କ'ଣ ପଚାରି ବୁଝି ଧୋବାକୁ ଗାଳିମନ୍ଦ କରି ଏମାନଙ୍କୁ ଫିଟାଇ ଦେଲେ । ଧୋବା ତା ଗଧ ଓ ଠେଙ୍ଗା ନେଇ ଚାଲିଲା । ଗାଁବାଲା ଏ ଚାରି ଜଣଙ୍କୁ ବଡ଼ ପଣ୍ଡିତ ଜାଣି ତାଙ୍କଠାରୁ ଶାସ୍ତ୍ରଚର୍ଚ୍ଚା ଶୁଣିବା ଇଚ୍ଛା-କରି ଗାଁ ଶାସନକୁ ନେଇଗଲେ । "ବିଦ୍ୱାନ ସର୍ବତ୍ର ପୂଜ୍ୟତେ' ମତ ଅନୁସାରେ ଏମାନେ ଶାସନକୁ ଯାଇ ଆଦର ପାଇ ବିଶ୍ରାମ ନେଲେ ।

ଶାସନର ଲୋକମାନେ ଏହାଙ୍କ ପାଣ୍ଡିତ୍ୟ ଗୁଣରେ ମୁଗ୍ଧ ହୋଇ ଚାରିଜଣଙ୍କୁ ଗ୍ରାମବାସୀ ଚାରିଜଣ ନିଜ ଘରକୁ ନିମନ୍ତ୍ରଣ କରି ନେଲେ । ଚାରି ପଣ୍ଡିତ ଚାରି ଘରକୁ ବାଣ୍ଟି ହୋଇଗଲେ । ପଣ୍ଡିତ ଯିବାରୁ ସେ ଚକୁଳି ପିଠା ଆଣି ଖାଇବାକୁ ଦେଲା । ପଣ୍ଡିତ ଖାଇବାକୁ ବସି ଦେଖିଲେ, ସେ ପିଠାରେ ପଚାଶ ଷାଠିଏଟା କରି ଛିଦ୍ର ହୋଇଛି । ତାହା ଦେଖି ପଣ୍ଡିତ ବିସ୍ମିତ ହୋଇ ଭାବିଲେ, ଶାସ୍ତ୍ର କହୁଛି—

ଛିଦ୍ରେଷ୍ୱନର୍ଥା ବହୁଳି ଭବନ୍ତି ।

ଛିଦ୍ର ଭିତରେ ବହୁତ ଅନର୍ଥ ଥାଏ । ତେଣୁ ଏ ଛିଦ୍ରଯୁକ୍ତ ପିଷ୍ଟକ ଭକ୍ଷଣ କଲେ ଅନର୍ଥ ଘଟିବାର ସମ୍ଭାବନା ଯଥେଷ୍ଟ ରହିଛି । ଅତଏବ ଏହା ବର୍ଜନୀୟ । ଏପରି ଅର୍ଥକରି ପ୍ରଥମ ପଣ୍ଡିତ ଉଠିଯାଇ ଉପାସ ରହିଲେ । ଦ୍ୱିତୀୟ ଜଣଙ୍କୁ ଯେ ନିମନ୍ତ୍ରଣ କରି ନେଇଥିଲା, ସେ ଅତିଥିଙ୍କ ପାଇଁ ଅନେକ ଗୁଡ଼ିଏ ତରକାରି କରିଥିଲା । ଅତିଥିଙ୍କୁ ଖାଇବାକୁ ଦଶବାରଟା ତିଅଣ ଦେବାରୁ ସେ ଏତେ ଗୁଡ଼ିଏ ତରକାରି ଦେଖି ଭାବିଲେ, ଓଃ ଅତିରିକ୍ତ ସଂଖ୍ୟା ହୋଇଛି ।

ଶାସ୍ତ୍ର କହୁଛି—ଅତି ପ୍ରୀତି ଗୌରବ ନଷ୍ଟ ।

ପୁଣି, ଅନ୍ନଦାନେ ବଳବଦ୍ଧୋ ସର୍ବମନ୍ତ୍ରଃ ଗର୍ହିତଂ ।"

ଯେ କୌଣସି ଜନଙ୍କ ଅନ୍ନରେ ହେଲେ ଗର୍ହିତ ହୁଏ । ସୁତରାଂ ଏଠାରେ ଅନ୍ତେବାସୀ ହେବାରୁ ଭୋଜନ କରିବା ଗର୍ହିତ ହେବ । ଏହା ଭାବି ସେ ନ ଖାଇ ଉଠିଗଲେ । ଗୃହସ୍ଥ ଜଣକୁ ଡାକିନେଇ ସେ ଜଣକ ପାଦ ପଖାଳି, ଫୁଲ ଚନ୍ଦନ ଦେଇ ପଣ୍ଡିତର ପାଦ ପୂଜା କରି ଅଭ୍ୟର୍ଥନା କଲା । ତା'ପରେ ଖାଇବାକୁ ଦେବାପାଇଁ ଆସନ ପକାଇ ଯୋଗାଡ଼ କରିବାର ଦେଖି ପଣ୍ଡିତ ଭାବିଲେ ଏ ଲୋକ ସଙ୍ଗରେ ମୋର ସେପରି ଜଣାଶୁଣା ବା ବନ୍ଧୁତା ନାହିଁ । ଏ ଲୋକଟା ଏପରି କରୁଛି କାହିଁକି ? କଥାରେ ଅଛି—

ଅଜଣା ଲୋକ ସଙ୍ଗ ପ୍ରଶସ୍ତ ରବି ରଙ୍ଗ
କାଖ ବାଜୁଆ ଘଣ୍ଟ ଆସ୍ନ ବାଜୁଆ ନାଟ ।

ଏଗୁଡ଼ାକ ଭଲ ନୁହେ । ତା'ଛଡ଼ା ଅତି ପ୍ରୀତି ସ୍ନେହର ଲକ୍ଷଣ । ସୁତରାଂ ଏଠାରେ ରହିବା, ଖାଇବା ଉଚିତ ନୁହେଁ । ଏହା ଭାବି ତେଣେ ଘରବାଲା ଠା ପାଣିର ଯୋଗାଡ଼ କରୁଛି, ଏଣେ ପଣ୍ଡିତ ଚମ୍ପଟ ଦେଲା । ସେ ପଛରୁ ଡ଼ାକ ଯେତେ ଦୌଡ଼ିଲା ପଣ୍ଡିତ ସେତେ ଯୋରରେ ଦୌଡ଼ି ପଳାଇଲା ।

ଚତୁର୍ଥ ପଣ୍ଡିତକୁ ଯେଉଁ ବ୍ୟକ୍ତି ନିମନ୍ତ୍ରଣ କରି ନେଲେ ତାଙ୍କ ପିତା ଅତି ବୃଦ୍ଧ ହେବାରୁ ଦାଢ଼ି କେଶ ନ କାଟି ରଖିଛନ୍ତି ଓ ଗଳାରେ ରୁଦ୍ରାକ୍ଷ ପିନ୍ଧିଛନ୍ତି । ତାଙ୍କ ଘର ସାମନାରେ ଶିବାଳୟ ଥିବାରୁ ବୁଢ଼ା ଶିବଙ୍କୁ ପୂଜା ଭକ୍ତି କରି ସବୁବେଳେ ଥାନ୍ତି । ନିମନ୍ତ୍ରିତ ପଣ୍ଡିତ ସେଠାରେ ଭୋଜନ କରିବାକୁ ଗଲାବେଳେ ବୁଢ଼ା ତଣ୍ଡ୍ କାନ୍ଧ ପୂଜା ଉପସ୍ଥିର ଯେନ ଶିବାଳୟକୁ ପଶୁଛନ୍ତି । ପଣ୍ଡିତ ଯାଇ ପିଣ୍ଡାରେ ଗୋଡ଼ ଧୋଇ ବସି ଶୁଣିଲା, ବୁଢ଼ା ଶିବଲିଙ୍ଗରେ

ଜଳ ଦେଇ କହୁଛନ୍ତି—'ଓଁ ନମଃ ଶିବାୟ, ଦରିଦ୍ର ଦୁଃଖଜନାୟଃ' ବୁଢ଼ାଙ୍କୁ ଦେଖି ଓ ତାଙ୍କର ଏପରି ମନ୍ତ୍ର ପଢ଼ା ଶୁଣି ପଣ୍ଡିତ ବିଚଳିତ ହୋଇ ଉଠିଲେ । ତେଣେ ଡାକ ନେଇଥିବା ଲୋକ ଅତିଥି ତର୍ପଣ ପାଇଁ ଘରେ ଆୟୋଜନ କରୁଛନ୍ତି । ଏଣେ ପଣ୍ଡିତ ପିଣ୍ଡାରେ ବସି ବିଚାରିଲେ ଏ ତ ସନ୍ୟାସୀର ଆଶ୍ରମ ପୁଣି ବ୍ରାହ୍ମଣର ଗୃହ ଓ ଶିବାଳୟ ଅଟେ । ମୋତେ ଏ ଜାଗାକୁ ଏ ଲୋକ ଡାକ ଆଣିଲା ଖିଆଇବାକୁ । ଏଠାରେ ଖାଇ ଯାଇ ମୁଁ କ'ଣ ବିନାଶ ହେବି ! ଶାସ୍ତ୍ର କହୁଛି—

ଶିବଦ୍ରବ୍ୟଂ ଦ୍ୱିଜଦ୍ରବ୍ୟଂ ସନ୍ନ୍ୟାସ ମେବ ଚ
ହଳାହଳ ବିଷଂ କୁର୍ଯ୍ୟାତ ସମୂଳେନ ବିନଶ୍ୟତି ।

ଶିବଦ୍ରବ୍ୟ, ଦ୍ୱିଜଦ୍ରବ୍ୟ, ସନ୍ୟାସୀ ଦ୍ରବ୍ୟ ଏଗୁଡ଼ିକ ହଳାହଳ ବିଷ ଭଳି । ଯିଏ ଏହାକୁ ଖାଏ ସେ ବିନାଶ ଯାଏ । ମୁଁ ଏଠାରେ ଖାଇ କଣ ଅପୁତ୍ର ଥାଇ ଥାଇ ମରିବି ? ଏହା ଭାବି ସେଠାରୁ ଉଠି ପଣ୍ଡିତ ପଳାଇ ଆସିଲା । ଏହିପ୍ରକାର ଶାସ୍ତ୍ରର ଅର୍ଥ କରି ସେ ଦିନ ତାଙ୍କ ପଣ୍ଡିତମାନେ ଉପାସ ରହି କଟାଇଲେ ।

ରାତି ବେଳକୁ ବସି ବସି ପଣ୍ଡିତ ବିଚାର କଲେ, ଏ ଜାଗାରେ ଆଉ ରହିବା ଉଚିତ ନୁହେଁ । କାରଣ ଲୋକଗୁଡ଼ାକ ଶିକ୍ଷା ଅଭାବରୁ ଏପରି କରି ଆଜି ବୁଦ୍ଧିଜୀବି ପଣ୍ଡିତଙ୍କୁ ଅନାହାରରେ ରଖିଛନ୍ତି । ତେଣୁ ଏ ଜାଗା ଛାଡ଼ି ଗୋଟିଏ ଭଲ ସ୍ଥାନରେ ବିଶ୍ରାମ ନେବା ବିଧେୟ । ଜଣେ ଯୁକ୍ତି ଦେଲା । ଶାସ୍ତ୍ରରେ ଅଛି—

'ସ୍ଥାନ ମୁତ୍ସୃଜ୍ୟ ଗଚ୍ଛନ୍ତି ସିଂହାଃ ସତ୍‌ପୁରୁଷା ଗଜାଃ
ତତ୍ରୈବ ନିଧନଂ ଯାନ୍ତି କାକାଃ କା ପୁରୁଷା ମୃଗାଃ ।

ଯେଉଁଠାରେ ସିଂହ ବାସ କରେ ସେଠାରେ ସୁପୁରୁଷ ଗଜ ବା ମୃଗମାନେ ରହିବା ନିରାପଦ ନୁହେଁ । ଅଥାତ୍ ଏ ସ୍ଥାନ ଶୀଘ୍ର ତ୍ୟାଗ କରିବା ବିଧେୟ । ଏହା ଠିକ୍ କରି

ଘଣ୍ଟ ଦ' ଘଡ଼ ଥାଉଁ ଉଠେ ବ୍ରହ୍ମପଣ୍ଡିତ ଅନ୍ୟ ବାଟରେ ଆଗେଇଲେ ।

ସେଠାରୁ କଛୁବାଟ ଯିବାପରେ ଗୋଟିଏ ଧର୍ମଶାଳା ଦେଖି-ବାର ପଣ୍ଡିତ ଭାବିଲେ ଟିକିଏ ରୋଷେଇ କରି ନ ଖାଇଲେ ଆଉ ଯାଇ ହେବନାହିଁ । ଏଇଠି ରନ୍ଧା ରୋଷେଇ କରି ମୁଠିଏ ଖାଇ ପରେ ଯିବା । ଏହା ସିଦ୍ଧାନ୍ତ କରି ଜଣେ ପଣ୍ଡିତ ଗଲେ ଚାଉଳ ଓ ହାଣ୍ଡି କିଣିବା ପାଇଁ, ଜଣେ ପରିବା, କାଠ ଓ ଅନ୍ୟ ଜଣକ ଘିଅ ଆଣିବାକୁ, ଆଉଜଣେ ସ୍ନାନକରି ରୋଷେଇ କରିବାକୁ ଗଲେ । ଯିଏ ଚାଉଳ କିଣିବାକୁ ଗଲେ ସେ ନାନାପ୍ରକାର ଚାଉଳରେ ଭରିଥିବାର ବାଛି ବାଛି ଶେଷକୁ ଦୋ'ସିଝା ବଗଡ଼ା ଚାଉଳ ଦ' ସେର ଓ ଭଙ୍ଗୁର (ଭଲ ପୋଡ଼ା ହୋଇଥିବା ଭଙ୍ଗୁର) ମୃତ୍ପାତ୍ର (ମାଟିହାଣ୍ଡି) ଟିଏ କିଣି ଆଣି ବେଷ୍ଟେସ୍ଥାଠାରେ ଥୋଇଦେଲେ । ଆଉ ଜଣକ କାକାଦ ଦଷ୍ଟା ବିମୁକ୍ତ ମୃତ୍ତିକା ଅଭ୍ୟନ୍ତରେ ଆତ୍ମରକ୍ଷା କରିଥିବା ଓଲୁଅ ଓ ଖମ୍ବଆଳୁ ପରିବା କିଣି ତା ସହିତ ଅଙ୍ଗାର-ତୁଲ୍ୟ ଦୃଶ୍ୟମାଣ ଧୂମ୍ର ତାପକାରକ ସମିଦ୍ୟ କେନ୍ଦୁକାଷ୍ଠ (କେନ୍ଦୁ-କାଠ ଜଳିଲେ ଖୋଳ ଛଡ଼ାଇ ଫୁଟେ, ଅଙ୍ଗାର ଭଳି ଆଞ୍ଚ ହୁଏ ବୋଲି ଏହା ଭଲହେବ ଭାବି) ଗୋଟାଏ ଆଣି ହାଜର କଲେ । ରୋଷେଇବାଲା ଚୁଲି ଲଗାଇ ବଗଡ଼ା ଚାଉଳକୁ ହାଣ୍ଡିରେ ପାଣିଦେଇ ବସାଇ ଜାଳିବାରୁ ଭାତ ଟକମକ ହୋଇ ଫୁଟିଲା । ସେହି ସଙ୍ଗରେ କେନ୍ଦୁକାଠ ଫଡ଼ ଫଡ଼ କରି ନିଆଁ ଖୋଳ ଛାଡ଼ି ଆଡ଼େ ଉଡ଼ିବାରୁ ଓଲୁଅ କାଟୁଥିବା ପଣ୍ଡିତ କାନରେ ଅଙ୍ଗୁଳି ପୂରାଇ ବେଷ୍ଟେସ୍ଥାକୁ ପଚାରିଲେ 'କଃ ଶବ୍ଦ ଦାୟତେ ।' ସେ ଯାଇ ଦେଖି କହିଲେ, ଟକମକ ଉତ୍ପଳ କଟଳଟଳଳ ।

ପ୍ରଶ୍ନ—'କଃ ଶବ୍ଦାୟତେ । ଶବ୍ଦ ହେଉଛି କ'ଣ ?

ଉତ୍ତର—କ [ପାଣି] ଚଳ (କେଟ୍‌ଲି, ଏଠାରେ ହାଣ୍ଡି) ଚଳସ୍ଥ ଜଳ ଟକମକ ହୋଇ ଶବ୍ଦ କରୁଛି ।

ପ୍ରଶ୍ନ—ଟକମକ ସଉଶ୍ୟ କୋଽର୍ଥଃ ? ଟକମକ ଶବ୍ଦର ଅର୍ଥ କଣ ? ଅର୍ଥାତ ବନ୍ଦକର । ଏହାଶୁଣି ରୋଷେଇଆ ଟକମକ ଶବ୍ଦ ବନ୍ଦ କରିବାକୁ ଢ଼ିମା ପଥରଟାଏ ନେଇ ହାଣ୍ଡିରେ ଦୁମ୍ କରି ପକାଇ ଦେବାରୁ ଘାତ ଫୁଟିବା ଶବ୍ଦ ବନ୍ଦହେଲା ଓ ହାଣ୍ଡି ଫାଟି ପାଣି ବୋହିବାରୁ କାଠର ନିଆଁ ନିଭି ଫଡ଼ ଫଡ଼ ଆବାଜ ବନ୍ଦ ହେଲା । ତେଣୁ ସେ ହସି ହସି ମୁହଁ କରି ଉତ୍ତର ଦେଲା—ଟକମକ ଶବ୍ଦସ୍ୟ ଠୋ ଶବ୍ଦ ନିବର୍ତ୍ତି କାଃ । ଅର୍ଥାତ୍ ଟକମକ କରୁଥିବା ଶବ୍ଦକୁ ଠୋ ଶବ୍ଦ ବନ୍ଦ କରିପାରେ । ତେଣେ ଓଲୁଅ କାଟୁଥିବା ପଣ୍ଡିତ କାନରେ ଅଙ୍ଗୁଳି ପୂରେଇଥିବାରୁ ଗଲୁକଲା । ସେ ବକଳ ହେବାରୁ ଦେଖି ରୋଷେଇଆ ବି ବ୍ୟସ୍ତ ହେଲା । ତେଣେ ପାଣି ବୋହି ନିଆଁ ଲିଭିଲା, କାଠ ଓଦା ।

ଘିଅ କିଣି ଆଣୁଥିବା ପଣ୍ଡିତ ଗୋଟିଏ କଂସା ବାଟିରେ ଘିଅ ନେଇ ଆସିଲାବେଳେ ଦେଖିଲା, ପାତ୍ରରେ ଘିଅ ଚହଲୁଛି । ତାହା ଦେଖି ସେ ଭାବିଲା 'ପାତ୍ରାଧୀନଂ ଘୃତଂ ବା ଘୃତାଧୀନ ପାତ୍ରମ୍' । ପାତ୍ରର ଅଧୀନ ହୋଇ ଘିଅ ଅଛି ନା ଘିଅର ଅଧୀନ ହୋଇ ପାତ୍ର ଅଛି । ଏପରି ଭାବି ଠିକ୍ କରି ନ ପାରିବାରୁ ଶେଷକୁ ବାଟିରୁ ଘିଅ କିଛି ଉଠାଇ ଦେଖିଲା, ହାତରେ ପାତ୍ରଟି ଠିକ୍ ରହୁଛି ଓ ଘିଅ ସେଥିରେ ପଡ଼ିଲା । ପୁଣି ବାଟିବାକୁ ଓଲଟାଇ ଦେବାରୁ ଘିଅଯାକ ତଳେ ଢ଼ାଳି ହୋଇଗଲା । ଏହା ଦେଖି ପଣ୍ଡିତ ସିଦ୍ଧାନ୍ତ କଲା—ପାତ୍ରାଧୀନଂ ଘୃତମ୍ । ଘିଅ ପାତ୍ରର ଅଧୀନ ହୋଇ ଥିଲା । ଏପରି ନ୍ୟାୟ ଶାସ୍ତ୍ରର ସିଦ୍ଧାନ୍ତ କରି ଖାଲି ବାଟି ଧରି ଆସିଲା ବେଳକୁ ରୋଷେଇ ବନ୍ଦ । ପଣ୍ଡିତ କାନ ଖୁଣ୍ଟାଇବାରେ ବ୍ୟସ୍ତ ଅଛନ୍ତି । ସେଠାରେ ସମସ୍ତେ ନିଜର କାର୍ଯ୍ୟକଳାପ ଭୁଲି

ପଣ୍ଡିତଙ୍କ ଓଲୁଅ ଗଲୁ ନିବାରଣାର୍ଥେ ଲାଗି ପଡ଼ିଲେ । ଶେଷରେ ପେଟ ଗଁ ଗଁ ଗର୍ଜିବାରୁ ସମସ୍ତେ ଗାଈ ଦ'ଘଡ଼ି ଥାଇଁ ଉଠି ସେଠାରୁ ବିଦାୟ ହୋଇଗଲେ ।

ସେହି ଉପାସରେ ମୁହଁ ଶୁଖି ଶୁଖି କରି ଗୁରୁପଣ୍ଡିତ କଚ୍ଛବାଟ ଯାଇ ଦେଖିଲେ, ଗୋଟିଏ ନଈ ବଢ଼ିଛି । ତାକୁ କପରି ପାରହୋଇଯିବେ କୂଳରେ ଛିଡ଼ାହୋଇ ଭାବ ହେଉଛନ୍ତି । ଏଇବେଳେ ଜଣେ ଲୋକର ଭେଟ ହେବାରୁ ଏମାନେ ତାକୁ ପଚାରିଲେ ଆରେ ଭାଇ ! ଏ ନଈରେ କେତେ ପାଣି ହବ କହି ପାରିବୁ ? ଲୋକଟି କହିଲା, ନଈତ ଦୁଇପା ବଢ଼ିଛି । କୋଉଠି କେତେ ପାଣିହେବ ମୁଁ କେମିତି କହିବ ? ଏହା କହି ସେ ଲୋକଟି ତା ବାଟରେ ଚାଲିଯିବାରୁ ଗୁରୁ ପଣ୍ଡିତ ବିଚାରିଲେ ଆରେ ମଣିଷର ମାପ ତ ଚୌଦପା (ସାଢ଼େ ତିନହାତ) । ନଈଟା ଦୁଇପା ବଢ଼ିଛି ହେଲେ କେଉଁଠି ଅଣ୍ଠାଏ କି ଜଙ୍ଘେ ପାଣି ହବ, ତହିଁରୁ ତ ବେଶୀ ନୁହେଁ । ଚାଲ ସମସ୍ତେ ପଶିଯିବା । ଏମନ୍ତ ବିଚାରି ଗୁରୁପଣ୍ଡିତଯାକ ଏକ ସଙ୍ଗରେ ସେ ନଈକୁ ଡେଇଁ ପଡ଼ିଲେ । ଏପରି କରିବାରୁ ନଈର ପ୍ରବଳ ସୁଅରେ ପଢ଼ୁଆ ଆଗୁଆ ଜଣକ ଭାସି ଯିବାରୁ ବାକି ତିନିଜଣ ପାଣିରୁ କୂଳକୁ ଉଠିଆସି ପାଖେ ପାଖେ ଦୌଡ଼ିଲେ । ସେ ପଣ୍ଡିତଟି ସୁଅଭଉଁରିରେ ପଡ଼ି ଭାସି ଯାଉଥାଏ । ଏମାନେ ନାକେଦମ୍ ହୋଇ ଛୁଟୁଥାନ୍ତି । କଚ୍ଛ ବାଟ ଗଲାରୁ ଭଉଁରିମୋଡ଼ ଦେଇ ସେ ଲୋକଟାକୁ କୂଳକୁ ଘୁରାଇ ଦେଲା । ସ୍ୱାଙ୍କ ଭିତରୁ ଜଣେ ତାକୁ ଧରିପକାଇଟେକେ ନ ପାରିବାରୁ ଆଉଜଣେ କହିଲା ପୂରାଟାକୁ ଆଣି ନ ପାରିଲେ ଅନ୍ତତଃ ଅଧେ ନେଇଆସ । ଅନ୍ୟଜଣେ କହିଲା ଠିକ୍ କହୁଛ, ଶାସ୍ତ୍ର କହୁଛି—ସର୍ବନାଶେ ସମୁତ୍ପନ୍ନେ ଅର୍ଦ୍ଧଂତ୍ୟଜନ୍ତି ପଣ୍ଡିତାଃ । ତେଣୁ ଅଧେ ନେବା । ଏହା କହି ସେ ଗୋଟିଏ

କଟାରି ଧରି ଉପାଳିଆ ପଣ୍ଡିତର ପେଟଠାରୁ କାଟିଦେଲା । ସେଥିରୁ ଗୋଡ଼ ଖଣ୍ଡକ ଇଏ ଧରିଛି, ଆଉ ଖଣ୍ଡକ ସୁଅରେ ନଈ ଭସେଇ ନେଇଗଲା । ଏମାନେ ପଣ୍ଡିତର ଗୋଡ଼ଖଣ୍ଡକୁ ବୋହି କିଛିଦୂର ଯିବାପରେ ଜଣେ କହିଲା, ଆହେ ! ଗୋଡ଼ ଦିଟା ବୋହି ନେଉଛ ଯିନା, ହେଲେ ଏଟା ଆଉ କଣ ବଞ୍ଚିବ । ଅନ୍ୟଜଣେ କହିଲା ଆମେତ ଶାସ୍ତ୍ରମତାନୁସାରେ କାର୍ଯ୍ୟ କଲୁ । ସେଥିରେ ଯଦି ସେ ନ ବଞ୍ଚିଲାତ ଆମେ ଆଉ କ'ଣ କରିବୁ ? ଏହାକହି ଗୋଡ଼ ଯୋଡ଼ାକୁ ସେଇଠି ଫୋପାଡ଼ିଦେଇ ନଉକାରେ ନଈପାରି ହୋଇଗଲେ । ଯାଉ ଯାଉ ବାଟରେ ଗୋଟାଏ ବଣ ପଡ଼ିଲା । ସେଇ ବଣଭିତରେ ଦେଖାଗଲା ଗୋଟିଏ ଲୋକ । ଗୋଟାଏ ଗଛର ଏପାଖରେ ଥାଇ ସେ ପାଖରୁ ଗୋଟାଏ ଭାଲୁର ହାତଧରି ଧରିଛି, ପାଖରେ କେତେ ଗୁଡ଼ାଏ ଟଙ୍କା ବଗୁଡ଼ି ହୋଇ ପଡ଼ିଛି । ଏମାନେ ଗଛଟା ମଝିରେ ଦୁଇପାଖରେ ଭାଲୁ ମଣିଷଙ୍କର ଏପରି ବୁଲା ବୁଲି ହେଉଥିବାର ଦେଖି ଲୋକଟିକୁ ପଚାରିଲେ; ଆରେ ହେ ଚଣ୍ଡାଳ । ତୁ ମଣିଷ ହୋଇ ପଶୁଜାତିଙ୍କୁ ଏପରି ଚକଳାପ ଉପରୁ କାହିଁକରେ ? ସେ ଲୋକଟି ଏକଥା ଶୁଣି ରାଗିଯାଇ କହିଲା, ଜାବଟିକୁ ଏମିତି କରି ବୁଲାଇଲେ ଇଏ ଟଙ୍କା ହଗେ, ଦେଖନା ଗୋସାଇଁ କେତେଟଙ୍କା ଏ ହଗିଲାଣି ।

ଏମାନେତ ସତକୁ ସତ ଟଙ୍କା ବୁଣିହୋଇ ପଡ଼ିଥିବା ଦେଖିଛନ୍ତି । ସେଇଠୁ ତିନିଜଣରୁ ଯେଉଁ ଜଣକ ବେଶୀଲୋଭୀ ସେ କହିଲା, ଆଚ୍ଛା ଭାଇ । ମୋତେଟିକିଏ ଦେଲ ମୁଁ ଦୁଃଖ ଏ ଭୂତ ହାଲିଆ ହୋଇଗଲୁଣି ଦେଖୁଛୁ । ସେଇଠୁ ସେ ଲୋକଟି ସ୍ୱା ହାତକୁ ଭାଲୁର ହାତ ଧରେଇ ଦେଇ, ନିଜ ଅଣ୍ଟାରୁ ଖସି ବୁଣି ଯାଇଥିବା ଟଙ୍କାତକ ଗୋଟେଇ ନେଇ ଗଲାବେଳେ କହିଲା, ଭଲକୁ ଧୁରେଉଥା ଗୋସେଇଁ । ହେଲେ ଭାଲୁ ଆଉ ଟଙ୍କା ହଗିବ

ନାହିଁ । ଏମାନେତ କେବେ ଭାଲୁ କୋଉ କଥା ବୋଲି ଦେଖି ନଥିଲେ । ଯେମିତ ଭାଲୁ ନାଁ ଶୁଣିଲେ ବାକ ଦୁଇଜଣ ଆଉ କଣ ଭଦନ୍ତ ! ଭଲୁକ ଚିତ୍କାରଦେଇ ବନ୍ଧୁକଟିକୁ ପୁଡ଼ ପକାଇଗଲେ । ଏଣେ ଲୋକେ ମିର୍ଚ୍ଚ ଭଲୁ ମାରିଦେଲେ ।

ସେ ଦୁଇଜଣ କୌଣସିମତେ ଯାଇ ଗାଁରେ ପହଞ୍ଚିଲେ । ସେଠାରେ କହ୍ରଦନ କଟିଗଲା । କାଳେ ଲୋକମାନେ ସ୍ୱାଙ୍କଠାରୁ ମାହାଳଆରେ କଥାଶୁଣି ବୁଦ୍ଧିଆ ହେବେ, ସେଥିପାଇଁ ଘରୁ ପଦାକୁ ବାହାରନ୍ତି ନାହିଁ । ଏମିତ କରିଥାନ୍ତି । ଏ ଦୁଇଜଣଙ୍କ ଭିତରୁ ଜଣକର ବାହାଘର ପିଲାଦିନେ ହୋଇଥାଏ । ଇଏ ନଥିବାରୁ ବୋହୂଟି ତା ବାପଘରେ ଥିଲା । ଯେମିତ ଜୋଇଁ ପାଠପଢ଼ି ବଡ଼ ପଣ୍ଡିତ ହୋଇ ଆସିଛି ବୋଲି ଶୁଣିଲେ, ଶଶୁର ଘର ଡ଼କେଇ ପଠେଇଲେ । ପଣ୍ଡିତ ମା' କହିଲେ, ହଉରେ ଯା, ଶ୍ୱଶୁର ଘରୁ ଟିକେ ବୁଲି ଆସିବୁ, ତୁ ଆସିଲେ ମୁଁ ସୁଆରି ପଠେଇ ବୋହୂକୁ ନେଇ ଆସିବ । ମା'ଙ୍କ କଥା ଶୁଣି ପଣ୍ଡିତ ଶ୍ୱଶୁର ଘରକୁ ଯିବାପାଇଁ ବାହାରିବାରୁ ମା' କହିଲେ ନୂଆହୋଇ ଶ୍ୱଶୁର ଘରକୁ ଯାଉଚୁ ସେଠାରେ ଗୁରୁଗମ୍ଭୀର ଭାବରେ ରହିବୁ । ଶଳା ଶାଳୀଏ ଭଙ୍ଗା ଚୌକି ଉପରେ ଆସନ ପାରିଦେବେ । ତେଣୁ ଭଲ ଜାଗା ଦେଖି ବସିବୁ । କୋଇଲି ପରି ଭାଷିବୁ । ପାଣି ପିଇବୁ ଗୁଣି, ଠିକା ରଖିବୁ ଗଣି । ଏପରି ମା' କହିବାରୁ ପଣ୍ଡିତ ଶ୍ୱଶୁର ଘରକୁ ଗଲା । ବାଟରେଦେଖିଲା ଶରୀରଟା ହାଲୁକା ଲାଗିଲାଣି । ଯାହା ଟିକଏ ଥିଲା ପେଟରୁ ଖାଦ୍ୟ ହଜମ ହୋଇ ଯିବାରୁ ଅଧିକ ହାଲୁକା ଲାଗିଲାଣି । ତେଣୁ ବାଟରୁ ଗୋଟିଏ ବଡ଼ପଥର ଗୋଟେଇ ବେଣ୍ଟାକୁ ମୁଣ୍ଡରେ ମୁଣ୍ଡାଇ ଶ୍ୱଶୁର ଘର ଘଷି ପଦା କରିଥିବା ଉଚ ଜାଗା ଦେଖି ସେଇ ଘଷି ଗଦାରେ ବସି କୋଇଲି ପରି କୁଜୁ କୁଜୁ ଡାକିଲା । ତା'ର ଏପରି ଡାକ ଶୁଣି ଆଖପାଖରୁ ଲୋକ ଆସି ଭିଡ଼ ଜମେଇ

କଏ ଦେଖି କହିଲା, ପାଗଳାଟାଏ ହେବ । କଏ କହିଲା ଏଇଟା ଏମିତି ହଉଚ କାହିଁକମ ? କେହି କହିଲା, ବେହିଆଟାକୁ ବାଡ଼େଇ ବାଡ଼େଇ ତଡ଼ଦିଅ । ଏପରି କଥା ଶୁଣି ତା ଶଳମାନେ ଆସି ଭଣୋଇ ବୋଲି ଚିହ୍ନି ମୁଣ୍ଡରୁ ପଥରଟା ଓହ୍ଲାଇପକେଇ ତାଙ୍କୁ ଘରକୁ ଡାକନେଲେ ।

ଶ୍ୱଶୁର ଘରେ ପହଞ୍ଚି ଦୁଇପହର ଖିଆ ପିଆ ସାରି ଦୁଆଇଁ ଶୋଇବାକୁ ଗଲେ । ଉଠିଲା ବେଳକୁ ଜଳପାନ ପିଇବା ପାଇଁ ଶଳାଏ ଗୋଟିଏ ଲୋଟାରେ ଛେନାପଣା କରି ପିଇବାକୁ ଦେଇ ଯାଇଛନ୍ତି । ମା'ଙ୍କ କଥା ଅନୁସାରେ 'ପାଣି ପିଇବ ଗୁଣି' ବୋଲି ପଣ୍ଡିତ ଲୋଟାରେ ଥିବା ପଣାକୁ ଦେଖିଲାବେଳକୁ ସେଥିରେ ଛେନା ସବୁଛି । ତାକୁ ଗୁଣିବା ଉଦ୍ଦେଶ୍ୟରେ ଲୋଟା ଭିତରେ ହାତ ପୂରେଇ ଛେନାକୁ ମୁଠାରେ ଧରି କାଢ଼ିଲାବେଳକୁ ହାତ ବାହାରିଲା ନାହିଁ । ଛେନାକୁ ସେମିତି ମୁଠେଇ ପଣ୍ଡିତ ବସିଥାଏ । ଲଜ୍ଜାରେ କାହାକୁ କିଛି କହୁ ନ ଥାଏ । ଏମିତି କରି ସଞ୍ଜହେବାରୁ ପୁଣି ଜଳଖିଆ ଖାଇବାକୁ ଡାକରାହେଲା । ହେଲେ ଇଏ ଆଉ ଯାଇ ପାରୁନାହିଁ । ଲୋଟା ଛାଡ଼ୁଛନା କୋଉଁ ଯାଉଛି । ବୋହୂଟି ଦେଖିଲା ଗେରସ୍ତକୁ ଡାକଲି ଜବାବ ନଦେଇ ଚୁପ ହୋଇ ବସିଲେ କାହିଁକ ? ଆଜ କିଛି ବପଦ ଆପଦ ହେଲା ନା କ'ଣ । ଏହା ଭାବ ସେ ଆସି ଦେଖିଲା ବେଳକୁ ସ୍ୱାମୀ ତା'ର ଲୋଟାରେ ହାତଭର ବସିଛି । ସେ କାରଣ ପଚାରି ବୁଝି କହିଲା ଛେନାଗୁଡ଼ାକ ଛାଡ଼ଦିଅ । ଏକଥା ଶୁଣି ପଣ୍ଡିତ ମୁଠା ଖୋଲି ଦେବାରୁ ଲୋଟା ମୁହଁରୁ ହାତଟା ଗୁଏଁ ବାହାରିଗଲା । ତା'ର ବୁଦ୍ଧି ବଚକ୍ଷଣତା ଦେଖି ପଣ୍ଡିତ ଭାବିଲା, ଇଏ ନିଶ୍ଚୟ ବପଦ ତାରିଣୀ କୌଣସି ଦେବୀ ହେବ । ନୋହିଲେ ମଣିଷଠାରେ ଏପରି ବୁଦ୍ଧି ଆସିବ କୁଆଡୁ ? ଯାହାହେଉ ବପଦ୍ରୁ ତାରିଣୀକୁ

ଗୋଟିଏ ନମସ୍କାର କରିବା ଦରକାର । ଏହା ଶୁଣି ସେ ଲମ୍ବ ହୋଇ ସ୍ତ୍ରୀର ଗୋଡ଼ତଳେ ପଡ଼ିବାରୁ ଶଳା ଶାଳୀମାନେ ହେଁ ହେଁ ହସି ହସି ଘର ଦ୍ୱାର କମ୍ପ କଲେ । ସ୍ତ୍ରୀ ଲଜ୍ଜାରେ ମୁହଁ ଢାଙ୍କି ପଳେଇଗଲା ।

ତହିଁ ଆରଦିନ ଶ୍ୱଶୁର ଜ୍ୱାଆଁଇଙ୍କୁ ବିଦାୟ ଦେଲାବେଳେ ଟଙ୍କାଟିଏ ଦେଇ କହିଲେ, ଯଦି ବାଟରେ ଭୋକ ଲାଗେ କରେ ତାହାହେଲେ କଛୁମିଛୁ କିଣି ଖାଇପିଇ ଯିବ । ଧଉ କହି ପଣ୍ଡିତ ସେଠାରୁ ବିଦାୟ ନେଇ ଆସି ଯାଉ ଯାଉ ବାଟରେ ଭୋକ କଲା । କଛୁମିଛୁ କେଉଁଠି ମିଳିବ ପଚାରି ପଚାରି ଶେଷରେ ଗୋଟିଏ ଗାଁରେ ପହଞ୍ଚିଲେ । ସେଠାରେ ଯେତେ ଲୋକଙ୍କୁ କଛୁମିଛୁ ମିଳିବାକୁ ପଚାରିବାରୁ ସମସ୍ତେ ମନା କଲେ । ଏହିପରି ପଚାରି ଯାଇ ଯାଇ ଶେଷକୁ ଜଣେ ବାଳକକୁ ପଚାରିବାରୁ ସିଏ କହିଲା, ମୋ ପାଖରେ କଛୁମିଛୁ ଅଛି, ମୁଁ ଦେବି । ପଣ୍ଡିତ ସେଇଠୁ ବାଳକ ସଙ୍ଗରେ ତା' ଘରକୁ ଯିବାରୁ ବାଳକ ତାଙ୍କ ପିଣ୍ଡାରେ ବସାଇ ବାଡ଼ିରୁ ଗୋଟାଏ ବଣ ଓଲୁଅ ଖୋଳି ତାକୁ ଭଲକରି ଧୋଇ ଆଣି ଟଙ୍କାଟିଏ ନେଇ ପଣ୍ଡିତଙ୍କୁ ଦେଲା । ପଣ୍ଡିତ ଦେଖିଲେ କି ଚମତ୍କାର, ବଡ଼ ସୁନ୍ଦରିଆ ରଙ୍ଗ କଛୁମିଛୁର । ତାକୁ କାଟିଦିଅ କହିବାରୁ ଓଲୁଅଟାକୁ ଚେକା ଚେକା କରି କାଟି ଆଣି ଦେଲା । ପଣ୍ଡିତ ଖଣ୍ଡିଏ କଦଳୀପତ୍ରରେ ଧରି ସେଗୁଡ଼ିକୁ ନେଇ କଛୁବାଟ ଯିବାରୁ ନଈଟିଏ ଭେଟିଲା । ନଈର ପାଣି ପରିଷ୍କାର ଦେଖି ମୁହଁ ହାତ ଧୋଇଆସି ପଣ୍ଡିତ କଛୁମିଛୁ ଖାଇବାକୁ ବସିଗଲା ।

ତେଣେ ଶ୍ୱଶୁର ଘରେ ଭଲ ଖାଇ ପାରିନ । ଏଣେ ତାଳି ତାଳି ଭୋକ ଜୋର କଲାଣି । ସେଥିକୁ ଚାଉ ଚାଉ କରି ବଣ-ଓଲୁଅରୁ ଦଶବାର ଖଣ୍ଡ ପଣ୍ଡିତ ଖାଇଦେଲା । ତା'ପରେ ଦେ ମଜା । କୁଣ୍ଡରୁ ଗଳାକଳା, ଅନ୍ତନଳୀଯାଏ ଗଲୁକଲା ଗଲ ଗଲ

ପଣ୍ଡିତ କହିଲେ, ଗଲ ଗଲ । ଗଳା ମୂହଁ ଫୁଲି ହେଲା ଢିନଗୁଣ । ମୋଟା ଲୁହଲୁଗ ହୋଇ ପଣ୍ଡିତ ଯାଇ କୌଣସି ମତେ ପହଞ୍ଚିଲେ ଘରେ । ପୁଅର ଏପରି ଅବସ୍ଥା ଦେଖି ମା ହାଲ କଣ ପଚାରିବାରୁ, ପଣ୍ଡିତର ଢ ପାଟି କାନ୍ଦ, କହିବ କଣ । କଚୁମିଛରୁ ବଳିଥିବା ସୁଣଖଣ୍ଡ ମା' ପାଟରେ ଥୋଇଦେଇ ଇସାରାରେ ବତେଇଲା । ମା ବୁଝିଲେ ପୁଅ ଓଲଅଖାଇ ଗଲୁ ରୋଗରେ ପଡ଼ିଛି । ସେଇଠୁ ତେନ୍ତୁଳ ଆମ୍ବୁଲ ଖୁଆଇ, କଇଦ ଲଗାଇ ପୁଅକୁ ଓଲୁଅ ଦଣାରୁ ମୁକୁଳା-ଇଲେ । ଗାଁ ଲୋକେ ପଣ୍ଡିତଙ୍କର ଏପରି ମୂର୍ଖାମୀ କାର୍ଯ୍ୟ ଦେଖି ଶୁଣି ସେ ଗାଁ ଶେଷମୁଣ୍ଡକୁ ଗୋଟିଏ ଚଉଁରା ବନେଇ ସେଥିରେ ଲେଖିଦେଲେ 'ଏହା ମୂର୍ଖ ପଣ୍ଡିତଙ୍କ ସ୍ମାରକୀ ।' ଉଦ୍ଦେଶ୍ୟ ହେଲା ଖାଲି ପାଠଘୋଷି ପଣ୍ଡିତ ହେଲେ ଚଳେ ନାହିଁ । ସାଧାରଣ ଓ ସାମାଜିକ ଜ୍ଞାନ ନ ଥିଲେ କାର୍ଯ୍ୟ ହୁଏ ନାହିଁ । ବୁଝିଲୁଟି ଅବୋଲକରା ?

ଅର୍ଥ ନ ବୁଝି ପାଠ, ଛକୁ ଫୁଟିଲେ କାଠ ।
ଚଉରା ଯୋଡ଼ା ଖୋଷା, ଗୁଲି ଚଳିଆ ବେଉସା ।
ଦୋହରା ବାହାରେ ଶଙ୍ଖା, ରଜରେ ମୟୂର ପଙ୍ଖା ।

ଏଗୁଡ଼ିକୁ ଭଲ ଆଦର ନାହିଁ । ଏହା କହି ଗୋସେଇଁ ଭୋଜନର ଆୟୋଜନ କଲେ । ଏ ଗପଟିକୁ ଅନନ୍ତ ରାଉଳ କହି ଆମକୁ ବହେ ହସେଇଥିଲେ ।

—❋—

## ସୌଦାଗରର ଜଭ ଓପଡ଼ା କଥା

ପଣ୍ଡିତ ମୂର୍ଖଙ୍କ କଥା ଶୁଣି ଗୋସେଇଁଙ୍କୁ ଭକ୍ତି କରି ଅବୋଲକରା ଯାଉଥାଏ । ଏହି ପ୍ରକାର କେତେଦିନ ଗିବା ପରେ ସେମାନେ ଯାଇ ନାଗବଦର୍ଭ ସୀମାରେ ପହଞ୍ଚିଲେ । ସେଠାରେ

ଗୋଟିଏ ଧର୍ମଶାଳା ଦେଖି ଗୋସେଇଁ କହିଲେ, ଅବୋଲକରା ଆଜ ଏଇଠି ରହିଯିବା । ସେଠୁଆ ପାର କରିବୁ । ସେଥିପାଇଁ କରିବାକୁ ମନ ହଉନ । ତୁ ବଜାରକୁ ଯା, କିଛି ବୁଟଛତୁ, ଚୁଡା ଗୁଡ଼ କିଣି ଆଣିବୁ । ଏହା କହି ଟଙ୍କାଟିଏ ଦେବାରୁ ଅବୋଲକରା ବଜାରକୁ ଗଲା । ଗୋସେଇଁ ପୋଖରୀରେ ଗୋଡହାତ ଧୋଇ ଆସି ସନ୍ଧ୍ୟା ତର୍ପଣ କରିବାକୁ ଲାଗିଲେ ।

କିଛି ସମୟ ବାଦେ ଅବୋଲକରା ଛତୁ, ଚୂଡ଼ା, ଗୁଡ଼ ଆଣି ଗୋସେଇଁ ପାଖରେ ଥୋଇ ଗୁମ୍ ହୋଇ ବସି ପଡ଼ିଲା । ତା'ର ଏପରି ହାବ ଭାବ ଦେଖି ଗୋସେଇଁ ପଚାରିଲେ, କିରେ ପୁଣି କୋଉଠି କିଛି ଦେଖିଲୁ ନା କ'ଣ ? ମୁହଁ ଫେରି ଫେରି କରି ଅବୋଲକରା କହିଲା, ହଁ ଗୋସେଇଁ ! ମୁଁ ବଜାରରୁ ଲେଉଟିଲା ବେଳେ ଦେଖିଲି ଯୋଡ଼ିଏ ବଡ ଅଶ୍ୱତ୍ଥ ଗଛ ଅଛି । ତା'ମଝିରେ ଚାନ୍ଦମାଟି ବନାହୋଇ ସେଥିରେ ପଥର ଖମ୍ବଟିଏ ଛିଆର ହୋଇଛି । ସେଇ ଖମ୍ବ ଉପରେ ଗୋଟିଏ ବୁଢ଼ା ନିଜ କାନକୁ ଟାଣୁଥିବାର ମୂର୍ତ୍ତିଟିଏ ଗଢ଼ା ହୋଇ ଥୁଆ ହୋଇଛି । ତା' ତଳେ ଚାନ୍ଦମାରେ ଲେଖା ହୋଇଛି 'କାଭ ଉପୁଡା ସୌଦାଗର' ସେପରି ରୂପ ଗଢ଼ାଥିବା କଥା ନ ବତେଇଲେ ଗୋସେଇଁ ତୁମେ ଛତୁ ଚୂଡା ଖାଅ ମୁଁ ଚାଲିଲି । ଏହା ଶୁଣି ଗୋସେଇଁ କହିଲେ, ରାତିଟାରେ କେଉଁଠିକି ଯିବୁ ? ଗୋଡ ହାତ ଧୋଇ ଆସି ବସ, ଛତୁ ଗୁଡ ଖାଉଥିବା, ଗପ କହୁଥିବା । ଏହା ଶୁଣି ଅବୋଲକରା ଖୁସି ହୋଇ ଗୋଡହାତ ଧୋଇ ଆସିବାରୁ ଗୋସେଇଁ କହିଲେ—

'ବଅସ କର ଧୀର ମଥା,
ଅବୋଲକରା ଶୁଣ ସେ କଥା ।

ଅବୋଲକରା ଖୁସି ହୋଇ ବସିବାରୁ ଗୋସେଇଁ ଚୁଡା ଛତୁ ସଜାଡ଼ି ସଜାଡ଼ି କହିଲେ—

ପୂର୍ବକାଳରେ ଏକଟି ନନ୍ଦପୁର ସହରରେ ଲକ୍ଷ୍ମୀଧର ବୋଲି ଜଣେ ବଣିକ ଥିଲା । ଗୋରୁ ମଇଁଷି ବେପାର କରି ଅଳ୍ପ ଦିନରେ ସେ ବଡ଼ ଧନୀ ହୋଇ ଉଠିଲା । ଯୋଗକୁ ତା'ର ପାଞ୍ଚପୁଅ । ସେଗୁଡ଼ିକ ମଧ୍ୟ ଅଳ୍ପ ଦିନରେ ପାରଗ ହୋଇ ଉଠିଲେ । ଛଅଟା ଲୋକର ବାରଟା ବାହୁ ଯୋଡ଼ିଏ ଖଟିଲା, ସେଠି ଧନବଳ ନ ବଢ଼ିବ କାହିଁକି ? କଥାରେ ଅଛି—ଜନବଳରୁ ଧନବଳ ବଢ଼େ । ଅବଶ୍ୟ ଯଦି ମନ ମେଳ ରହେ । ବାପ ଥିବାରୁ ପୁଅଙ୍କର ମନ ଏକଯୁଟ । ଦ'ଖଣ୍ଡ ବୋଇତ କରି ପୁଅମାନେ ବାଲ୍ଲୀ, ଦ୍ୱୀପକୁ ବାଣିଜ କରି ଯା'ନ୍ତି । ଏମିତି କରୁ କରୁ ଦଶ ବର୍ଷରେ ବୁଢ଼ା ଲକ୍ଷ ଲକ୍ଷ ହୀରା ମାଣିକର ମାଲିକ ହୋଇଗଲା । ଟଙ୍କା ସୁନା ଯେତେ, ଘୋଡ଼ା ସେତେ । ବୁଢ଼ା ସକାଳେ ଦୁକୁଡ଼ା ଦନ୍ତ ଲେମ୍ବୁ ପତ୍ରରେ ବାନ୍ଧିରଖେ, ସେଥିରୁ ଟିକିଏ ଲେଖେ ପାଟିରେ ପକାଉ-ଥାଏ । ଉପରଓଳି ତିନଟା ବେଳେ ଦାନ୍ତ ଘଷି ଗାଧୋଇ ଖାଏ । ଗଉଳ କହେ ମୋଟେ ଆଜି ଶ୍ରେକ କରୁନ । ଗେରସ୍ତ ପରି ବୁଢ଼ୀର ବି ସେଇ ବଳକେ । ଏମିତି କରି ଧନ ସମ୍ପଦ ବଢ଼ୁଥାଏ । ଧନରେ ବଡ଼ ହେବାରୁ ଜନର ଆଦର ବଢ଼ୁଥାଏ ବେଶୀ । କିଏ ମାହାର୍ଦ୍ଦ ଦିଏ; କିଏ ତା ପୁଅକୁ ଝିଅ ଦେବାକୁ ଆସେ । କିଏ ବି ସେଇ ମାହାର୍ଦ୍ଦ ମୁଲଜାର ସୁଯୋଗ ନେଇ ଧର୍ମଝିଅ ଧର୍ମପୁଅଙ୍କୁ ପଠେଇ ତାଙ୍କଜମି ଜମା କରିଗତ କରି ମହାଜନୀ ବଢ଼ାଇ ଗ୍ଲେ । ଶାସ୍ତ୍ର କହୁଛି—

"ନ ବିଦ୍ୟାୟା ନୈବକୁଳେନ ଗୌରବଂ
ଜନାନୁରାଗୋ ଧନ କ୍ଲେଶ କେବଳଂ ।

ବିଦ୍ୱାନ ଲୋକ ସତକୁଳରେ ଜନ୍ମ ହୋଇଥିଲେ ମଧ୍ୟ ଯଦି ଧନହୀନ ହୋଇଥାଏ, ତା ପାଖରେ ଜନପ୍ରିୟତା ବଢ଼େ ନାହିଁ । ଯେପରି ଧନିକ ଲୋକ ପାଖରେ ଜୁଟେ । ସାଧାରଣ ଲୋକମାନେ ବିଦ୍ୟା-

ବନ୍ତ କୁଳୀନଠାରୁ ମୂର୍ଖଧନୀଙ୍କୁ ବେଶି ଗୁରୁତ୍ୱ ଦେଉଥାନ୍ତି । ଏହି ପ୍ରକାର କେତେ ବୁଢ଼ାର ବଡ଼ ଦେଖିବ ବଢ଼ିବାରୁ ବୃନ୍ଦପୁଅଙ୍କୁ ସ୍ୱଦେଶୀ ସୌଦାଗର ଝିଅଦେଇ ଜୋଇଁ କଲେ । ସବା ସାନ ପୁଅକୁ ଆଣ୍ଡ୍ରା ଦେଶର ଜଣେ ରାଜା ଝିଅକୁ ଦେଇ ଜୋଇଁ କଲା । ରାଜାଝିଅ ବୋହୂ ହୋଇ ଆସିବାରୁ ବୁଢ଼ା ତା' ଉପରେ ମନେ ମନେ ବିରକ୍ତ ହେଉଥାଏ । କାରଣ ହେଉଛି, ତା'ର ଟିକଏ ଖର୍ଚ୍ଚ ବେଶି ।

ଏମିତି କରି କେତୁଦିନ ଯିବାରୁ ପରେ ପାଞ୍ଚ ପୁଅଯାକ ମଳୟ ଦେଶକୁ ବଣିଜ କରିବାକୁ ଗଲେ । ସାନବୋହୂ ଗର୍ଭବତୀ ହୋଇଥାଏ । ଏହି ସମୟ ଭିତରେ ଜଣେ ଜଉତିଷ ପଣ୍ଡିତ ଯାଇ ନନ୍ଦପୁର ଲକ୍ଷ୍ମୀଧର ସୌଦାଗର ଘରେ ପହଞ୍ଚିଲେ । ସୌଦାଗର ବୁଢ଼ା ତାଙ୍କୁ ଆଦର କରି ରଖିଥାଏ । ଦିନେ ପଣ୍ଡିତ ଅନ୍ୟଆଡ଼େ ଯିବାକୁ ବାହାରିବାରୁ ବୁଢ଼ା କହିଲା, ପଣ୍ଡିତେ ! ମୋର ଜାତକ ଖଣ୍ଡିକ ବୁଝି ଦେବଟି । କୋଉ ଗ୍ରହ ବଳରୁ ମୋର ଧନଜନର ବଳ ବଢ଼ିଲା । ସେଇଠୁ ପଣ୍ଡିତ ତା' ଜାତକ ବୁଝି ଦେଖିଲେ ଯେ, ତା' ଜାତକ ଚକ୍ରରେ କୋଉ ଗ୍ରହ ଯୋଉଠି ଅଛନ୍ତି ସେଥିରେ ଦରିଦ୍ର ହେବାର କଥା । ତା'ପରେ ସାନବୋହୂର କୋଷ୍ଠୀ ନେଇ ଦେଖିଲେ ସେ'ଟା ଅଲକ୍ଷଣୀ । ଅନେକଙ୍କର ସ୍ତ୍ରୀ ଧନରେ ଧନବନ୍ତ ବୋଲି ସ୍ତ୍ରୀ'ର ବା ହୋଇଥିବ ବୋଲି ଯାହା ପଣ୍ଡିତ ଭାବିଥିଲେ ତାହା ମଧ୍ୟ ନୁହେଁ । ତାହାହେଲେ କିପରି ସୌଦାଗରର ଧନଜନ ବଢ଼ିଲା ସେଇକଥା ଭାବି ପଣ୍ଡିତ ବିସ୍ମିତ ହେଲେ । ତା'ପରେ ଯାଇ ତା'ଘରର ଚୁଅ ବାଉଁଶ ସୁଦ୍ଧା ପରୀକ୍ଷା କରିଲେ ଦେଖିଲେ ଯେ କୋଉଠି ହେଲେ ଗୋଟିଏ କୁଲକ୍ଷଣ ନାହିଁ । ଏହି ସମୟରେ ଗୋଟିଏ ବୁଢ଼ୀ ଶଙ୍ଖବିରଡ଼ି ମ୍ୟାଉଁ କରି ଦେଇବାଟେ ଚାଲିଗଲା । ତାକୁ ଦେଖି ପଣ୍ଡିତ ହସି ହସି କହିଲେ, ସୌଦାଗର ! ତୁମେ ଯିଏ

ଯେତେ ଅଛ କାହାର ଭାଗ୍ୟବଳରେ ତୁମର ଧନଜନ ବଳ ବଢ଼ି ନାହିଁ । କେବଳ ଏଇ ମୋର ଶଙ୍ଖୀ ବଗଡ଼ିଟି ଅଛି, ତାର ବଳରେ ଓ ଟା ମା'ର ଭାଗ୍ୟବଳରେ ତୁମର ଧନ ଦୌଲତ ଉଠିଛି, ଉଠିବ ବ । ପଣ୍ଡିତ ଏକଥା କହି ପାଉଣା ଗଣ୍ଡାକ ନେଇ ବିଦାୟ ହୋଇ ଗଲେ । ଗଲାବେଳେ କହି ଗଲେ ବୁଢ଼ା କହିଲା ଆଉମାସକୁ ବାଟେ ଆସିବ, ମୁଁ ଦେଖିକରି ବିଦାକ ଦେବ । ଏହାଶୁଣି ପଣ୍ଡିତ ଖୁସି ହୋଇ ବାହାରିଗଲେ ।

ଏଣେ ବୁଢ଼ାର ମନ ସେଇଠୁ ଡୋଳିଇ ଯାଇଛି ହେଲା । ଡାକେ ଶଙ୍ଖୀ ବଗଡ଼ଟା ମରିଯିବ, ମରିଗଲେ ଧନ ଦୌଲତ ସରିଯିବ । ଏହି ଚିନ୍ତାରେ ବୁଢ଼ାକୁ ଦିବାନିଶି ଭୋକ ଶୋଷ ଲାଗୁ ନଥାଏ । ଦିନେ ହଠାତ୍ ସ୍ଥିର ଠିକ୍ କଲା—ବଗଡ଼ଟା ଭାଗ୍ୟରୁ ଯଦି ମୁଁ ବଡ଼ ହୋଇଛି, ତା' ହେଲେ ବଗଡ଼ଟାକୁ ମାରି ଖାଇଦେଲେ ତା' ମାଂସ ମୋ ମାଂସରେ ମିଶି ରହିବ । ମୁଁ ଖାଇଥିବାଯାକେ ଧନ ଦୌଲତ ଯିବ କୁଆଡ଼େ ? ଏହାଭାବି ଦିନେ ଗୁପ୍ତରେ ବଗଡ଼-ଟାକୁ ମାରି ଦେଇ ତା ମାଂସ କାଟିକୁଟି ଡାଗେଇ ଆଣି ଥୋଇ-ଦେଲା । ଶାସ୍ତ୍ର କହିଛି—

ଈର୍ଷା ଘୃଣା କୁଟ କ୍ରୋଧ ଶଙ୍କା ବିଭୂଷିତ ।
ପରଭାଗ୍ୟଜୀବୀ ଷଡ଼ ଜୀବନ ଦୁଃଖିତା ॥

ତହିଁ ଆରଦିନ ବୁଢ଼ା ବୁଢ଼ୀକି ଡାକ କହିଲା ଦେଖ୍, କେତେ ମାସଧରି ମୋତେ ଗୋଟାଏ ବାତ ଧରିଛି । ମୁଁ ସେଥିପାଇଁ ଗୋଟିଏ ବଇଦଙ୍କୁ ଦେଖାଇ ତାଙ୍କଠାରୁ କିଛି ମାଂସ ଆଣିଛି । ସିଏ କହିଛନ୍ତି ଏ ମାଂସତକ ମୋତେ ଏକାକେ ଖାଇବାକୁ ପଡ଼ିବ । ଏଥିରୁ ଟିକିଏ ଊଣା ହେଲେ ବାତରୋଗ ଛାଡ଼ିବ ନାହିଁ । ତୁମେ ଏ ମାଂସକୁ ନେଇଯାଅ । ନିଜେ ଜାଉଳିଆର ରନ୍ଧି ବାଢ଼ି ଆଣ । ଏଥିରୁ ଟିକିଏ ଯିମିତି କେହି ନ ଖାଆନ୍ତି । ଏହା ଶୁଣି ବୁଢ଼ୀ ହଉଜଳ

ମାଂସ ପୋଟଳଟା ନେଇଗଲା । ବୁଢ଼ା ମନେ ମନେ ଖୁସି ହୋଇ କହୁଥାଏ—

"ବୁଦ୍ଧି ବିଚାରି କରି କାର୍ଯ୍ୟ କଲେ
ପ୍ରମାଦ ନ ପଡ଼ଇ ଭଲେ ।
ବୁଦ୍ଧି କି କରି ଆଗୁସାର,
ପଣ୍ଡିତ ଜନଙ୍କ ବେଭାର ।"

ଦେଖାଯାଉ ବିଜ୍ଞ ଭାଗ୍ୟ କି ମୋ ଭାଗ୍ୟ । ଏଥର ଧନ ସମ୍ପତ୍ତି କୁଆଡ଼େ ଯିବ ?

ତେଣେ ବୁଢ଼ୀ ଗାଧୁଆ ପାଧୁଆ କରି ବେଷେଇ ଘରକୁ ଗଲା-ବେଳକୁ ବୋହୂମାନେ ଦେଖି ଚମକି ଉଠିଲେ । ବଡ଼ ବୋହୂ କହିଲା କିଗୋ ମା ! ଆଜି ଏ କି କଥା ଦେଖୁଚି ତୁମର ? ସତୁରି ବର୍ଷ ବୟସରେ ତିରିଷ ବର୍ଷ ହେଲା ବେଷେଇ ଘରୁ ଆଜି ପୁଣି ହାଣ୍ଡିଶାଳରେ ପଶୁଚ । ଆମେ ପାଞ୍ଚ ବୋହୂ କ'ଣ ମରିଗଲୁ କି ? ତୁମେ ଆଜି ରାନ୍ଧିବାକୁ ଯାଉଚ ଯେ ? ବୁଢ଼ୀ କହିଲା ନାହିଁ ଲୋ ଝିଅ । ବୁଢ଼ାକୁ ଏ ବୟସରେ କୁଆଡ଼େ ବାତ ଧରିଚି । ସେଥିପାଇଁ ବଇଦଠେଇଁ ଯାଇଥିଲେ ଯେ ବଇଦ ତାଙ୍କୁ ଏଇ ମାଉଁସ ଦେଇଚି ଏମାନଙ୍କୁ ଖାଇଲେ ବୁଢ଼ାର ବାତଯିବ । ସେଇଥିପାଇଁ ତାଗଦାଦେଇ କହିଚି ମୁଁ ନିଜେ ରାନ୍ଧି ଦେବି । ସବୁତକ ସେ ଏକଲା ଖାଇବ । ସେଇଥିପାଇଁ ଯାଉଚୁ ମାଉଁସ ରାନ୍ଧିଦେଲେ ତେଣିକି ସବୁ ତୁମେ କରିବ ଯେ । ଏକଥା ଶୁଣି ବଡ଼ ବୋହୂ କହିଲା, ମଲାମୋର ଏଇଥିପାଇଁ ତୁମେ ସତୁରି ବର୍ଷରେ ଚୂଲି ଫୁଙ୍କିବାକୁ ଯାଉଚ ! ଥୁଅ ଥୁଅ ମୁଁ ରାନ୍ଧି ଦଉଚି, ତୁମେ ସେଇଠି ବସ । ବୁଢ଼ୀ କହିଲା-ନାହିଁ ଲୋ ମା', ରାନ୍ଧିଛୁ ଜାଣିଲେ ସଦାଁଖିଆ ବୁଢ଼ାଟା ବାଡ଼େଇବ ମୋତେ । ବୁଢ଼ୀ କାଳରେ ଆଉ କେଣ ମାଡ଼ ସହିବାକୁ ବଳ ଅଛି ? ବଡ଼ବୋହୂ କହିଲା, ସିଏ ଜାଣିବେ କିମିତି ? ତୁମେ କହିବ ମୁଁ ରାନ୍ଧି ଆଣିଚି ନିଜେ । ଏହା କହି ବଡ଼ବୋହୂ ମାଂସ ପୋଟଳଟା

ବୁଢ଼ୀଠୁ ଛଡ଼େଇ ନେଇ ରାନ୍ଧ ବସିଲା । ମଝିଆ ବୋହୂ ଆସି ବୁଢ଼ୀର ଗୋଡ଼ ଚିପିଦେଲା । ପଛ ବୋହୂ ମସିଣାଟା ଆଣି ପାରି ଦେଇ କହିଲା, ମା' ଏଇଠି ଶୁଅ ମୁଁ ତୁମ ପିଠି ଚିପି ଦଉଚି । ବୁଢ଼ୀ ଦେଖିଲା ରାଗ କରୁଚି । ଆମ୍ବୁଆଳିଆ ବହୁ କାମୁଡ଼ ହଉଚି । ଶୁଳପିଆ ଜମାରୁ ଛାଡ଼ୁଚି । ବଅଁଳୁ ବୋହୂମାନେ ଘଷିମୋଡ଼ । ଏହା ସବୁ ବୁଢ଼ୀ ଶୋଇପଡ଼ିଲା ।

ତେଣେ ବଡ଼ ବୋହୂ ମାଂସ ରାନ୍ଧ ବଢାଇ ଦେବାରୁ ବାସନା ଛୁଟିଆଡ଼େ ମହକୁଥାଏ । ସାନ ବୋହୂର ସାତ ମାସର ପୋଖଣ୍ଡ । ସେ ବାସନା ପାଇ ଆସି ବଡ଼ ଯାଆଙ୍କୁ ପଚାରିଲା, କଲୋ ନାନି ! ବଡ଼ ବନିଆକର କଣ ରାନ୍ଧୁଚ, ଟିକଏ ଚଖେଇବଟି । ବଡ଼ ଅକଳିଆ କଥା ହେଲା । ସାନ ଯା'ଟା ପୋଖଣ୍ଡ । ଟିକଏ ଖାଇବାକୁ ନ ଦେଲେ ଜନ୍ମିବା ପିଲାଟର ହେବୁକେଲେ ପାଟିରୁ ଲାଳ ବୋହିବ ବନ୍ଦେବ ଅବା କମିଲା । ଏହାଭାବି ଗୋଟିଏ ଗିନାରେ ଦି'ଖଣ୍ଡ ମାଂସ ଟିକଏ ବଢାଇଦେଇ କହିଲା, ମଣଚ କାନ ଉହାଡ଼ କରି ନେଇ ଯା । କାହାକୁ କହିବୁ ନାହିଁ । କବାଟ କଣରେ ବସି ଖାଇଦେବୁ । ଏଟା ହଉଚି ବୁଢ଼ାର ଦବେଇ ମାଉଁସ । କେହି ଜାଣିଲେ ବୁଢ଼ା ଆଗରେ କହିନେବ । ବୁଢ଼ା ସେ ବୁଢ଼ୀ ଆଉ ଆମ ସମସ୍ତଙ୍କୁ ଏ ଘରେ ଥାନ ଦେବନାହିଁ । ଏହାକହି ବଡ଼ ବୋହୂ ମାଂସ ଗିନାଟା ଦେଇାରୁ ସାନବୋହୂ କାନ ଘୋଡ଼ାଇ ହଉ କହି ନେଇଗଲା ।

ଏହାପରେ ବଡ଼ବୋହୂ ଶାଶୁଙ୍କୁ ଡାକ କହିଲା, ମା' ମାଉଁସ ହୋଇଗଲାଣି । ଏଠୁ ନେଇଯାଅ । ନୋହିଲେ ମୁଁ ଗୁଡ଼ ଯାଇ ପାରୁନ । ସେଇଠୁ ବୁଢ଼ୀ ଆସି ମାଂସ ତରକାରୀର ହାଣ୍ଡି ସୁଦ୍ଧା ନେଇ ବୁଢ଼ା ପାଖରେ ଥୋଇଦେଲା । ବୁଢ଼ା ମାଂସ ତରକାରୀଦେଖି

ହାତ ମୁହଁ ଧୋଇଆସି ସବୁଯାକ ମାଂସ ଖାଇ ହାଣ୍ଡି ଧୋଇ ପାଣିତକ ବି ପିଇଦେଲା । ତା'ପରେ ଭାବିଲା, ଏଥର ଭଲେଇ ଭାଗ୍ୟକୁ ମୋ ଭାଗ୍ୟରେ ମିଳେଇ ଦେଲି । ଏଣିକି ସବୁ ସମ୍ପଦ ହାଲି ପିଛୁଲା ଭବାଳ୍ ମୋର ହୋଇଗଲା । ଏହା ଭାବି ବୁଢ଼ା ମନେମନେ ଖୁସି ହୋଇ ନିଶ୍ଚିନ୍ତରେ ଥାଏ । ସମୟ ହେବାରୁ ସେ ପଣ୍ଡିତ ପୁଣି ଆସି ବୁଢ଼ା ପାଖରେ ପହଞ୍ଚିଲେ । ପଣ୍ଡିତଙ୍କୁ ଦେଖି ବୁଢ଼ା ହସ ହସ ହୋଇ ପଚାରିଲା, ଜଉତିଷ ! ଅବକା ମୋ ଜାତକ ଖଣ୍ଡିକ ବୁଝି ଦେଖିବଟି, ମୋ ଭାଗ୍ୟରେ ଅଦଳ ବଦଳ କିଛି ହେଲାକି ନାହିଁ ? ପଣ୍ଡିତ ବୁଢ଼ା କୋଷ୍ଠୀଧରି ଛକ କାଟି ଗଣାଇ ଦେଖିଲେ, ଯଥାପୂର୍ବଂ ତଥାପରଂ । ସେଇଠୁ ଜଉତିଷ କହିଲେ—ନାଇଁ ତୁମର କୌଣସି ଭାଗ୍ୟର ପରିବର୍ତ୍ତନ ହୋଇନାହିଁ । କେବଳ ତୁମର ଯେଉଁ ସାନବୋହୂ, ତା'ର ଗର୍ଭରେ ଯେଉଁ ପୁଅ ଅଛି, ସେଇ ପୁଅ କପାଳିଆ ହୋଇଛି । ତାହାରି ଭାଗ୍ୟର ଧନ ଦୌଲତ ବଢ଼ିଛି, ଆହୁରି ମଧ୍ୟ ବଢ଼ିଯିବ । ତୁମେଗୁଡ଼ାକ ଯେତେ, ହତଭାଗା ସବୁ । ପଣ୍ଡିତ ଏକଥା କହିବାରୁ ବୁଢ଼ା ମନ ଊଣା କରି ତାଙ୍କୁ ଟଙ୍କାଟିଏ ଦେଇ ବିଦାୟ ଦେଲା । ତା'ପରେ ଘରକୁ ଯାଇ ଭାବିଲା, ସାନବୋହୂ ଗର୍ଭବତୀ ଥିବାରୁ ଏ ବୁଢ଼ୀ ନିଶ୍ଚୟ ମାଂସରୁ କିଛି ତାକୁ ଖାଇବାକୁ ଦେଇଚି । ନୋହିଲେ ଭଲେଇ ଭାଗ୍ୟଟା ମୋ ପାଖକୁ ନ ଆସି ତା ପେଟ ସନ୍ଧରେ ପୁଅପାଖକୁ ଗଲା କେମିତି ? ହ୍ୟାଗୋ ବୁଢ଼ୀଟା ଅବିଶ୍ୱାସୀ କାର୍ଯ୍ୟକଲା । ଏଇଆ ପାଇଁ ଶାସ୍ତ୍ର କହୁଛି—

"ଶାସ୍ତ୍ରଂ ସୁଚିନ୍ତିତ ମଥୋ ପରିଚିନ୍ତନୀୟ-
ମାରାଧିତୋଽପି ନୃପତିଃ ପରିଶଙ୍କନୀୟଃ ।
ଅଙ୍କେ ସ୍ଥିତାପି ଯୁବତିଃ ପରିରକ୍ଷଣୀୟା
ଶାସ୍ତ୍ରେ ନୃପେ ଚ ଯୁବତୌ ଚ କୁତୋ ବଶିତ୍ୱଂ ।

ଶାସ୍ତ୍ର ପଢ଼ି ଘାଣ୍ଟମନ୍ତ ଘୋଷି ଚର୍ଚ୍ଚା ନକଲେ ପାସୋରିଯାଏ । ଅନୁଗ୍ରହକାରୀ ରାଜାଠାରୁ ଦୂରେଇଗଲେ ସେ ମଧ୍ୟ ଅନିଷ୍ଟକାରୀ ହୁଏ । ସଙ୍ଗରେ ବସିଥିବା ଯୁବତୀ ମଧ୍ୟ ଉଠିଗଲେ ଅନ୍ୟମନା ହୋଇଯାଏ । ଅତଏବ ଶାସ୍ତ୍ର, ରାଜା ଓ ଯୁବତୀ ଏ ତିନିକୁ ପୂରା ବିଶ୍ୱାସ ନକରି ସାବଧାନ ଥିବ । ଏହା ଶୁଣି ରାଗ ତମ ତମ ହୋଇ ବୁଢ଼ୀକି ଡାକି ପଚାରିଲା—ମୋ ମାଂସରୁ କାହାକୁ ଦେଇ ଦେଲୁତ କହ, ଅବକା ମୁଁ ଭିକାରୀ ହେବାକୁ ଯାଉଛି । ବୁଢ଼ାର ଏକଥା ଶୁଣି ବୁଢ଼ୀର ଆଖିଯୋଡ଼ାକ ତାଳୁରେ ଖୋସି ହୋଇଗଲା । ସେ ଡ଼ମା ଡମା ଆଖି କାଢ଼ି କହିଲା—ମଲାମୋର, ତୁମକୁ କ'ଣ ଦଇବ ଛୁଉଁଲାଣିକି ? ବୁଢ଼ା କାଳରେ ମୋତେ ଅବିଶ୍ୱାସୀ ଦୋଷ ଦେଇ ଦଣ୍ଡିବାକୁ ବସୁଚ ? ତମକୁ ବାସ୍ତୁଆ ଦଶା ପଡ଼ିବାରୁ ଏମିତି କୁବଚନ କହିଲଣି । ମୁଁ ଆଉ ଏ ଘରେ ରହିବିନାହିଁ । ଆଜ ଠଞ୍ଜିକୁ ମୋ ପୁରୁଖା ଘରକୁ ଚାଲିଯିବି । ନଇଲେ ମୋର ଆଉ ଏ ଘରେ ମାନ ସମ୍ମାନ ରହିବ ନାହିଁ । ଏହା କହି ବୁଢ଼ୀ ହିଁ ହିଁ କରି ଶବେଇ କାନ୍ଦିବାରୁ, ବୁଢ଼ା ଦେଖିଲା ବୁଢ଼ୀ ଗଲେ ସବୁଦିନ ଶଯ୍ୟାପରେ କ'ଣ ବୋହୂମାନେ ସେବା ଯତନ କରିବେ । ସେ ଘଣ୍ଟେଏ ତ ମରିଯିବାକୁ ବସିଛନ୍ତି । ଏହା ଶୁଣି ବୁଢ଼ୀକି ଯେତେ ନରମ କରି ପଚାରିଲା, ହେଲେ ବୁଢ଼ୀ ଆଦୌ ମାନିଲା ନାହିଁ । ସେଇଠୁ ବୁଢ଼ା ବୁଢ଼ୀକି ଛାଡ଼ିଦେଇ କବାଟ କିଳି ଶୋଇରହିଲା ।

ଯୋଗକୁ ଦି'ଦିନ ବାଦେ ପୁଅମାନେ ବୋଇତ ବୋଝେଇ ଧନ ଦଉଲତ ନେଇ ଘରକୁ ଲେଉଟିଲେ । ତାଙ୍କ ଆସିବାର ଖବର ପାଇ ବୁଢ଼ୀ ବୋହୂମାନଙ୍କୁ ସଜେଇ ବନ୍ଦାଣଥାଳି ସଜାଡ଼ି ନଈକୂଳକୁ ନେଇଗଲା । ପୁଅମାନେ ବୋଇତ ଉତ୍ତେଇବାରୁ ବୋହୂଏ ଯାଇ ବୋଇତ ବନ୍ଦେଇଲେ । ପୁଅମାନେ ସମସ୍ତଙ୍କୁ ଦେଖିଲେ ହେଲେ ବୁଢ଼ାର ପତ୍ତାନାହିଁ । ସେଇଠ ଏପାଖ ସେପାଖ

ଅନେକ ବୁଆଡ଼େ ବୁଢ଼ାକୁ ଦେଖି ନ ପାରି ଭାବିଲେ, ବୁଢ଼ାଟା ମରିଗଲା ନା କଣ ? ହେଲେ ବୁଢ଼ୀଟା ଅଳଅଙ୍କ ପରି ଗହଣା ସିନ୍ଦୁର ମଣ୍ଡି ହୋଇଛି । ବୁଢ଼ୀ କଣ ଆଉ ଦୁଃଖସ୍ଥ ହେଲା ନା କ'ଣ ? ବୁଢ଼ା ଥିଲେତ ସଦା ଆଗେ ଆସିଥାନ୍ତା । ସେ କାହିଁକି ଆସି ନାହିଁ । ଏମିତି ଭାବି ପୁଅମାନେ ବୋଇତରୁ ଓହ୍ଲାଇ ଆସି ବୁଢ଼ୀର ଗୋଡ଼ ତଳେ ଜୁହାର ହୋଇ ପଚାରିଲେ, ଆଲୋ ବୋଉ ! ବାପା କାହାନ୍ତି କି ? ବୁଢ଼ୀ କହିଲା, ବୁଢ଼ା ତ ପ୍ରକୃତଛଡ଼ା ରୋଗରେ ପଡ଼ିଲାଣି । ଘରଦ୍ୱାର ଧରି ବାହାର ଭଲନାହିଁ । କୋଉ ବାତ ଧରିଛି ବୋଲି କବିରାଜଠୁ ଦବେଇ ଖାଉଚନ୍ତି । ନାହାକ ଉଠେଇ ଜାତକ ପର ବୁଝୁଛନ୍ତି । ଏମିତି କି ଦଶା ଯେ ଘରକୁ ଯାଇ ଦେଖ । ସେଇଠୁ ପୁଅମାନେ ମଜୁରିଆ ଲଗେଇ ମାଲମତା ଟଳାଇ କରାଇ ଯାଇ ଦେଖିଲେ ବେଳକୁ ବୁଢ଼ା ଦୁଆର କିଳି ଶୋଇଛି । ସେଇଠୁ ପୁଅମାନେ ଅନେକ ଡକାଡକି କରିବାରୁ ବୁଢ଼ା ଉଠି କବାଟ ଖୋଲିଦେଲା ।

ତା' ପରେ ପୁଅମାନେ ଦେଖିଲେ ବୁଢ଼ା ବିକଳ ହୋଇ କାନ୍ଦୁଛି । ତାର ଏପରି ଅବସ୍ଥା ଦେଖି ପଚାରିଲେ, କଣ ହୋଇଛି ବାପା ! ତୁମେ ଏପରି ବିକଳ ହୋଇ କାନ୍ଦୁଛ କାହିଁକି ? ବୁଢ଼ା ଆହୁରି ବେଶି ଧକେଇ ଧକେଇ ମାଇପିଙ୍କ ପରି କୋହ ହେଲା । ପୁଅମାନେ ବୁଢ଼ା ଆଖିରୁ ଲୁହ ପୋଛି ପଚାରିଲେ, କୁହ ବାପା ! ତୁମକୁ କିଏ ଅପମାନ ଦେଲା ନା ରୋଗ ବ୍ୟାଧି ବେଶି ବାଧିଲା ? ଆମ ପାଖରେ ଖୋଲି କୁହ । ବୁଢ଼ା ଆଖି ପୋଛି କହିଲା, ତୁମେ ମୋର ସୁପୁତ୍ର କି କୁପୁତ୍ର ଆଗେ କୁହ । କୋଉପୁଅ ନିଜକୁ କୁପୁତ୍ର ବୋଲି କୁହେ ? ପୁଅମାନେ କହିଲେ, ସୁପୁତ୍ର । ସେଇଠି ବୁଢ଼ା କହିଲା—ଯଦି ସୁପୁତ୍ର ହୋଇଥିବ, ରାମପରି ପିତୃ ଆଜ୍ଞା ପାଳି ପାରିବ ? ପୁଅ କହିଲେ ନିଶ୍ଚୟ ପାଳିବୁ । ବୁଢ଼ା କହିଲା, ମୁଁ ଜାଣେ ତୁମେ ମୋର ସୁପୁତ୍ର । ବାପା ! ମୋର କୋଉଠି କଷ୍ଟ ନ ଥିଲା ।

ବନ ସବୁ ଦୁଃଖଧନ୍ଦାକରି, ଧର୍ମକୁ ତାକ ଝୁମ ସାଙ୍କୋଟିକି ସାଇତି, ସେଇ ସାଙ୍ଗକୁ ମାତପୁରୁଷ ଚଳବାଭଳି ବଉବାସ୍ତବ ଭଲାକା ତୋଳିଚ ଅଉଛନ୍ତି । ଏ ସବୁ କ'ଣ ବୋଟିବ ପାଇଁ ଛୁଟିଯିବ? ପୁଅମାନେ କହିଲେ, ତାହା ହୋଇପାରେନା । କୁହ କାରଣ କଣ ବୁଢ଼ା କହିଲା, ଆଗେ ସବା ସାନବୋହୂକୁ ଏ ଘରୁ ତଡ଼ି ଦେଇ ଆସିଲେ ତେବେ ମୁଁ ପାଣି ପିଇବ, ଏ ଘରେ ରହିବ । ନହେଲେ ଯୋଉଠି ଯାହା ରଖିଛି କହିଦେଇ ମୁଁ ସ୍ୱର୍ଗଗାମୀ ହୋଇଯିବ । ବୁଢ଼ାର ଏପରି ଜିଦ୍ ଦେଖି ପୁଅମାନେ ହଜ କହି ଭିତରକୁ ଗଲେ,

ଖିଆ ପିଆ ସାରିବାରୁ ପୁଅମାନେ ମା'କୁ ଡକେଇ ପଚାରିଲେ, ମା ବୋହୂଙ୍କ ଉପରେ ବାପା ଏପରି ରାଗିଛନ୍ତି କାହିଁକି ? ବୁଢ଼ୀ ଏକଥା ଶୁଣି ତ କେବାରେ ଖପା । କହିଲା—ଛୁଡ଼ ଛୁଡ଼, ବୁଢ଼ାକୁ ଅଇଛୁକା କାଆସ୍ତରି ଝୁଲୁଛୁ । ନାସ୍ତୀଅ ରୋଗ ଧରିଚି । ପ୍ରକୃତି ଛଡ଼ା ହେବାରୁ ଚକୁତ ଆସିଲାଣି । ଯାହାତାହା କହି ବୁଲୁଚି । ବୋହୂମାନେ ମୋର ଧରଣୀ ପରି ସର୍ବଂ ସହା, ଲକ୍ଷ୍ମୀଙ୍କ ଭଳି । ତାଙ୍କ ଗୁଣର ଖୁଣ କାଢିବ କଏ ? ସେଇଠୁ ପୁଅମାନେ ସବୁ ବୋହୂଙ୍କୁ ଡାକ ପଚାରିବାରୁ ସେମାନେ କହିଲେ ଆମ ଜାଣିବାରେ ଆମେ ତ କିଛି କସୁର କରିନାହୁଁ । ସିଏ କାହିଁକି ରାଗିଛନ୍ତି ଆମେ କହିବୁ କେମିତି ? ବୁଢ଼ୀ କହିଲା, ସାନ ବୋହୂ ମୋର ରଜାଝିଅ; ଗର୍ଭଗିରି ଅଛି । ତା ଚଲଣ ବୋଲଣ କାରଣକୁ ଖୁଣିଦେବ କୋଉ ପୁଅର ବହପ ଅଛି ? ସମସ୍ତଙ୍କଠାରୁ ସବୁ ଶୁଣି ପୁଅମାନେ ବିଚାର କଲେ କ'ଣ କରିବା ? ସବୁ ତ ଶୁଣିଲେ ଜାଣିଲେ । ଅବିକା ବୁଢ଼ା କଥା ନ ମାନିଲେ ଏ ଘରେ ଆଉ କାହାର ସ୍ଥାନ ନାହିଁ ।

ଏପରି ବିଚାର କରୁ କରୁ ବଡ଼ପୁଅ କହିଲା; ଗୋଟାଏ କାମ କରିବା; ବୁଢ଼ାରତ ଅବିକା ଜିଦ୍ ରହିଚି । ତେଣୁ ସାନଭାଇ କଛି

ଧନ ପାଇଁ ସାନ ବୋହୂକୁ ନେଇ ତା ବାପ ଘରେ ଛାଡ଼ିଆସୁ । ସେଠାରେ ଭଲରେ ସୂତିକା ହୋଇଯାଉ । ଏଣେ ହୁଏତ ବୁଢ଼ାମନ୍ତୁ ନୋହିଲେ ମୁଣ୍ଡ ଅଣ୍ଡା ହେଲେ ଭୁଲିଯାଉ । ଯା ହଉ ଗୋଟାଏ ହେଲେ ସାନ ବୋହୂକୁ ଘେନି ଆସିବା । ଯୁକ୍ତିଟା ସମସ୍ତଙ୍କ ମନକୁ ପାଇବାରୁ ସାନପୁଅ ସାନ ବୋହୂକୁ ନେଇ ସେଦିନ ତା' ବାପଘରଆଡ଼େ ବାହାରିଲା ।

'ବାଟରେ ଉଠିଲା ଝଡ଼ ବହିଲା ତୋଫାନ
ନାବ ନେଇ ଲଗାଇଲେ କୂଳେ ମାଝିଗଣ ।
ଗଛ ଡାଳେ ଡୋରିବାନ୍ଧି ଗାବନ ଛକଳେ
କେ କାହିଁ ଆଶ୍ରୟ ନେଲେ ଆଉ ମାଝିକୂଳେ ।

ଏକାଳେ ପ୍ରବଳ ଧାରେ ଢାଳିଲା ବରଷା
ଗର୍ଭବତୀ ବାଳା ମନ ହୋଇଲା ତରସା ।
ବହିଲା ପବନ ବେଗେ ଭାଜିଲା ଗଛଡାଳ
ନଦୀଜଳେ ନାବ ନୋଟି ହେଲା ଅସମ୍ଭାଳ ।

ତା ଦେଖି ସାଧବ ପୁଅ କନ୍ୟା ଘେନି ଆସି
ତଟ ବଟ ବୃକ୍ଷମୂଳେ ବିଶ୍ରାମିଲା ବସି
ଦଇବ ଯୋଗେ ଛୁଟିଲା ବରଷା ପବନ
ଉଠିଲା ସେଠାରେ ବଧୂ ପ୍ରସବ ବେଦନା ।

ତା ଦେଖି ଯୁବକ ବୋଲେ କ୍ଷଣେ ବସ ଏଥି
ନିକଟ ଗ୍ରାମରୁ ଧାଈ ଡାକି ଆଣୁଅଛି ।
ଏତେ ବୋଲି ଗଲା ସତ୍ତ୍ୱେ ବଢ଼ିଲା ବେଦନା
ଏକା ରତ୍ନ ପୁତ୍ରଜାତ କଲା ସୁବଦନା ।

ବୃକ୍ଷମୂଳେ ପୁତ୍ର ଥୋଇ ଗଲା ନଦୀଜଳେ
ଦେହବାସ ଧୋଇ ଆସିବାକୁ ତରବରେ ।

ଏକାଳେ ଧୀବର ଏକ ଜାଲ ଘେନ ଆସି
ଦେଖିଲା କାନ୍ଦଇ ଶିଶୁ ହୋଇଣ ନଅଁଶି ।
ତୋଳ ଘେନଗଲା ଘରେ ଘରେ ସେ ଧୀବର
ନେଜଟି ସାଧବ ପୁଅ ବୁଝିଲା ଖବର ।
ପୁଅ ବଜାଇ ଜନମ କାନ୍ଦ ଲୁଚେ ତଳେ
ଧିକକାର ତେଜଲା ସ୍ୱାମୀ ତାକୁ ସେଠାବରେ ।
ସତ୍ୟ ଅଲକ୍ଷଣୀ ଜାଣି ତେଜଛନ୍ତି ପିତା
ହ୍ୱଗ୍ୟ ତୋର ଧର ଚଳଯାଅ ଗୋ ବନତା ।
ଏତେ ବୋଲ ତେଜ ଗଲା ସତ୍ତୁଁ ନଜପତ
ନଖାକୂଳେ ଅନ୍ଧକାରେ କାନ୍ଦଇ ଯୁବତୀ ।
ଯୋଗକୁ ନକଟେ ମିଳେ ଏକଇ କରଣ
ସୁଭଗ ପଟ୍ଟନାୟକ ବସୁ।। ପ୍ରମାଣ ।

ନର୍ଜନ ନଣ୍ଡୀକୂଳ ଅନ୍ଧାରକାରେ ତରୁଣୀଟିଏ କାନ୍ଦୁଥିବାର ଦେଖି ପଟ୍ଟନାୟକ ବୁଢା କାରଣ କ'ଣ ପଚାରିଲା । ରାଜକନ୍ୟା ସବୁ ଘଟଣାଗୁଡ଼ିକ ଗୋଟି ଗୋଟି କରି କହିବାରୁ ବୁଢ଼ା କହିଲା, ଓଃ ଏପରି ନଷ୍ଟୁର ମଣିଷ ପୃଥ୍ୱି ଅଛନ୍ତି ! ନା ହଉ, ତୁ ମୋ ସାଙ୍ଗରେ ଚାଲେ । ମୋର ଝିଅ ହୋଇ ମୋ ଘରେ ରହିବୁ ପନ୍ଦର ବର୍ଷ ବୋହୂଟାକୁ ଧନ ଲୋଭି ଏ ବଣରେ ଛାଡ଼ଗଲା ବୋଲି ସ୍ତ ତ ଗୁଡ଼ ଯାଇ ପାରିବ ନାହିଁ । ଏହା କହି ବୋହୂଟିକୁ ନେଇଗଲା ପଟ୍ଟନାୟକ ବୁଢ଼ା ।

ତେଣେ ନେଉଟ ବୁଢ଼ା କ'ଣ କରିଛୁ ନା, ପୁଅଟିକ ଜାଲତଳେ ଲୁଚେଇକରି ନେଇ ଘରେ ପହଞ୍ଚ । ନେଉଟଣୀକୁ ଚୁପ ଚୁପ ଡ଼ାକ କହିଲା, ଆମର ପିଲାପିଲ ନ ଥିବାରୁ ଭଗବାନ ଆମକୁ ଦୟା କରିଛନ୍ତି । ତୁ ଏ ପିଲାଟିକୁ ନେଇ ଘରେ ଲୁଚେଇ କରି ରଖ । ଆଜି ତୁ ପେଟରେ ହ'ଖଣ୍ଡ କନା

ଗୁଡ଼ାଗୁଡ଼ କରି ଗାଁରେ ବୁଲି ଆସିବୁ ଯା । ଯେଉଁ ଲୋକ ପଚାରିବେ କହିବୁ, ଦଶମାସ ପୂରିଲାଣି । ଏହା ଶିଖେଇ କେଉଟୁଣୀକି ପିଲାଟି ଦେବାରୁ ସେ ଦେଖିଲା ନାହିନାଡ଼, ଫୁଲନାଡ଼ ସବୁ ଲାଗିଛି । ସିଏ ଡରବର ହୋଇ ଶିଶୁଟିକୁ ନେଇ ମନ୍ତ୍ରପାଣି ଛାଟିଇ ଦେଇ ବୁଢ଼ା-ଜିମା କରିଦେଲା । ତା'ପରେ ନିଜ ପେଟରେ କନା ପୋଟଳାଏ ଗୁଡ଼େଇ ସାଇପାଖ ଯାଇ ବୁଲି ଆସିଲା । ତାର ଏମିତ ବୁଢ଼ୀକାଳେ ପେଟ ଉଚ୍ଚା ଦେଖି ଗାଁ ମାଇପେ ପଚାରିଲେ, କଲେ ଶୁକୁସା ନାମା ! ବୁଢ଼ୀକାଳେ ଏ କି ଅକାଳ ସଜ ? କେଉଁଟୁଣୀ ମୁହଁରେ ଲୁଗାକାନି ଚାପି କହିଲା, ଏଇଥିପାଇଁ ତ ଏଇ କେତେଦିନ ତୁମ ଦୁଆରକୁ ଆସି ନଥିଲି । ଅକାଳରେ ତାଳସଜପରି ସୁବାକାଳ ଯାଇ ବୁଢ଼ୀ କାଳରେ ପେଟ ବଡ଼ ହୋଇଛି । କେହି ପଚାରିଲା, ଆଲୋ କେତେ ମାସ ହେଲାଣି ? ବୁଢ଼ୀ କହିଲା, ଦଶମାସ ଚାଲିଛି । କଅଣ ହଉଛି କିଏ ଜାଣେ । କେହି ଜଣେ କହିଲା, ତୁ ବଡ଼ ଭାଗ୍ୟବତୀ ଲୋ ? ଷାଠିଏ ବର୍ଷରେ ଷଠିଘର କରିବୁ, ସ୍ୱାଠୁ ବଳି ବଡ଼ କଥା ଆଉ କଅଣ ଅଛି ? କେଉଟୁଣୀ କହିଲା, ସେଥିପାଇଁ ଲାଜରେ ଘରୁ ବାହାର ପାରୁ ନାହିଁ । ଆଜ ମୋ ପେଟଟା ବଡ଼ ବଥଉଛି । ଏହା କହି କେଉଟୁଣୀ ଲେଉଟିଗଲା ।

ତେଣେ ବୁଢ଼ା ଭନ୍ତୁଡ଼ ଜଳାଇ ଗରମ ପାଣି କରି ପିଲାଟିର ଶୁଖିଲା ନାହି ନାଡ଼କୁ ଭେଦାଉଛି । ଏଇବେଳେ ବୁଢ଼ୀ ପଦାରୁ ପେଟରୁ କନା ବୁଜୁଳାଟା କାଢ଼ି ଫୋପାଡ଼ ଦେଇ ଉଁ ହୁଁ କରି କୁନ୍ଥେଇଲା । ପାଖଲୋକେ ପଚାରିଲେ କରେ ବୁଢ଼ା କେଉଟୁଣୀ ବୁଢ଼ୀ କୁନ୍ଥଉଛି କାହିଁକି ? ବୁଢ଼ା ଜବ.ବଦେଲା, ସରମିଆ କଥା କଣ କହିବ ଭାଇ । 'ଯାହା ନଥିଲା ସୁଆଦେ, ବୁଢ଼ାକାଳକୁ ଜା'ଣେ ।' ତେପନ ବର୍ଷ ଉମରର ବୁଢ଼ୀ ପୋଖଣ୍ଡ ହୋଇ କୁନ୍ଥାଉଛି !

ଆରେ ତୋତେ ବଡ଼ କପାଳିଆ କହିବାକୁ ହବ । କଏ କହିଲା, ନାଇଁ ବଡ଼ କରମଣ୍ଡଆରେ । ଏଇବେଳେ ବୁଢ଼ୀ ହାତ ଗରମ କରି ପିଲାଟାକୁ କଡ଼ା ସେକ ଦବାରୁ ପିଲାଟା କୁଆଁ କୁଆଁ କରି କାନ୍ଦିଲା । ସେ ରାବ ଶୁଣି ଗାଁଖ ପଡ଼ିଶା ମାଇପେ କହିଲେ, ହେଇଟି କେଉଟୁଣୀ ବୁଢ଼ୀର ପିଲା ହେଲାଣି । କେତେ ଆସି କହିଲେ, ମାଉସୀ ବୁଢ଼ୀକାଳେ ଧନ ରଖିଲୁ । ଆହାକ କହିଲେ, 'କିଂ ସଙ୍ଗମେନ ଚନ୍ଦ୍ରସ୍ୟ ଯଦ୍ଧ ନେକ୍ଷଣୀପୁଃ ।' ଏମିତି କରି ପିଲା ଦେଖି ସମସ୍ତେ କହିଲେ, ବୁଢ଼ୀକାଳେ କେଉଟୁଣୀ ଗଣ୍ଡକଅନି ସୁନ୍ଦର ପିଲାପାଇଚ । ତା'ପରେ ଯିଏ ଯାହା ଘରକୁ ଯିବାରୁ ବୁଢ଼ାବୁଢ଼ୀ ପୁଅକୁ ନେଇ ଖୁସିରେ ଥାନ୍ତି । ଦିନେ ପୂର୍ଣ୍ଣିମୀ ଦିନ ବୁଢ଼ୀପାଇ ପୁଅକୁ ଟେକିଲା ବେଳକୁ ଦେଖିଲା, ତା' ନାକରେ ମୁକୁତାଟିଏ ଜମୁଚି ଉଠିଚି । ସେଟା ଜକ ଜକ ଦିଶିବାରୁ ଏଟା କଣକହି ବୁଢ଼ୀ ସେଏଟାକୁ ଉଠାଇ ଆଣି ବୁଢ଼ାକୁ ଦେଖାଇଲା । ବୁଢ଼ା ତ କେଉଟ ପୁଅ । ମୁକୁତାର ରୂପ ଆକାର ଭଲ ଜାଣେ । ସେଠୁ ସେ ବୁଢ଼ୀ ମାଟିରେ ହାତ ଝୁପି କହିଲା, ଚୁପ ଚୁପ, କାହାକୁ କହନା । ଏକୁ କେଉଁଠୁ ପାଇଲୁ? ବୁଢ଼ୀ କହିଲା ସେ ପୁଅର ନାକରୁ ଏ ମୋଟିକ ଉଠିଥିଲା । ବୁଢ଼ା କହିଲା, ଏଇଟା ବଡ଼ ମୂଲ୍ୟବାନ ମୁକୁତା । ଗୁଡ଼ିଲୁ ଆଉ ଉଠିଛି କି ନାହିଁ ଦେଖିବା । ଏହା କହି ଯାଚ ଦେଖିଲାବେଳକୁ ଆଉନାହିଁ । ପୁଣି ମାସକ ପରେ ପୂର୍ଣ୍ଣିମୀ ଦିନ ଆଉ ଗୋଟିଏ ଉଠିଲା । ଏମିତିହୋଇ ପୂର୍ଣ୍ଣିମାକୁ ପୂର୍ଣ୍ଣିମୀ ଗୋଟି ଏ ଜର ଶ୍ୱେତମୁକ୍ତା ପୁଅ ନାକରୁ ଉଠଆସେ । ବୁଢ଼ା ସେ ଗୋଟିକୁ ନେଇ ଦୂର ବଜାରରେ ଦୁଇଶହ ଟଙ୍କାକୁ ବିକି ଆସେ । ଲୋକେ ପଚାରିଲେ ବୁଢ଼ା, ଦରିଆ ପାଣିରୁ ଶାମୁକା ଖୋଜି କାଢ଼ୁଚୁ । ଏମିତି କହି ଭଳେ । ସେଇ ମୁକ୍ତା ହେଲୁ ପୁଅ ନାଁ ରଖିଲା ମୁକ୍ତକୁମାର । ପୁଅ ଦିନକୁ ଦିନ ବଢ଼େ । ମାସକୁ ମାସ ବୁଢ଼ାର ଦୌଲତ ବଢ଼ିଯାଏ ।

ଏମିତି କରି ବୁଢ଼ା ମାଣ୍ଡବର୍ଷରେ ଚୋଠା ଉଠାଇ ଜମିଦାରୀ କିଣି ଥୋଇଲା । ପୁଅଟିର ପଢ଼ାପଢ଼ିର ସୁବିଧା କରିଦେବାରୁ ସେ ଗଣେଶ ପରି ମହାଶୁଣ୍ଡା କଲା । ଏଣେ ଚନ୍ଦ୍ରକଳା ପରି ବଢ଼ି-ଥାଏ ବି ।

ପୁଅକୁ ଷୋଳବର୍ଷ ହେଲାବେଳକୁ ବୁଢ଼ା ଭାବିଲା, ଆମ କେଉଟ ଘରେ ମୋ ପୁଅପାଇଁ ଝିଅ କାହିଁ ସେ ଦେବ ଭରସା । କାରଣ ଘରର ରୂପ ଗୁଣର ଝିଅ ଅଛନ୍ତି । ଯେଉଁଥିରୁ ଗୋଟିଏ ଆଣିବାକୁ ମୁଁ ଖୋଜୁଛି । କେଉଟାଣୀ କହିଲା, ସ୍ତ୍ରୀଠୁ ବଢ଼ି ସବୁଠ କରଣ କୁଳକୁ ଲୋଡ଼ୁଛନ୍ତି । ଆମର ଯେଉଁଥିରୁ ଗୋଟିଏ ଆଣିଲେ ଭଲ ହେବ । ବୁଢ଼ା କହିଲା – ଆମେ ସିନା ଏପରି ଭାବୁଚେ ହେଲେ ଅଧୁନା ଯୁଗରେ ତ ପୁଅ ଝିଅଙ୍କ ମନ ଉପରେ ଭାର ଦେବାର ନିର୍ଭର କରୁଛି । ଏ କଥାଟା ପୁଅ କାନକୁ ଆଗେଇଏ । ଏପରି କଥା ଦିନେ ମୁକ୍ତାକୁମାର ଶୁଣିବାରୁ କହିଲା, ବାପା ! ମୋତେ ବାହା କରେଇବାକୁ ହେଲେ ମୁଁ ଆଗେ କନ୍ୟା ଦେଖି ପସନ୍ଦ କରିବି । ତା'ପରେ ବାହାଘର ହେବ । ବୁଢ଼ା ହଉ କହି ରହିଲା ।

ଦିନେ ମୁକ୍ତକୁମାର ଘୋଡ଼ାରେ ଚଢ଼ି ଆସିଲାବେଳେ ଦେଖିଲା, ଗୋଟିଏ ସୁନ୍ଦରୀ କନ୍ୟା ସ୍ନାନସାରି ଧୀରେ ଧୀରେ ପଟ୍ଟନାୟକ ଘରକୁ ଚାଲିଗଲା । ସେହି କନ୍ୟାକୁ ଦେଖିବା ମାତ୍ରେ ମୁକ୍ତକୁମାର ମୋହିତ ହୋଇଗଲା । ତା'ପରେ ସେ ମନେ ମନେ ଠିକ୍ କଲା, ଏହି କନ୍ୟାକୁ ଯେମିତି ହେଉ ବାହାହେବ ।

ଘରକୁ ଆସି ସେଦିନ ରାତିରେ ସେ ଶୋଇ କନ୍ୟାର ରୂପ ଲାବଣ୍ୟ କଥା ଭାବି ଭାବି ତାକୁ ନିଦ ଲାଗିଯାଇଛି । ଏହି ବେଳେ ସ୍ୱପ୍ନ ଦେଖିଲା; ତା ଘୋଡ଼ାକୁ ଚୋର ନେଇ ଯାଉଛି ।

ସେଇଠୁ ସେ ଧୀରେ ଧୀରେ ବନ୍ଧୁଙ୍କୁ ନେଇ ଘୋଡ଼ାଶାଳ-ଆଡ଼କୁ ଆଗେଇବା ବେଳକୁ ଦେଖିଲା, ଗୋଟିଏ ଅତି ସୁନ୍ଦରୀ ସ୍ତ୍ରୀ-ଲୋକଟି ବେଶବାସ ଅସମ୍ଭାଳ ହୋଇ ପଳାଉଚି । ତାକୁ ଦେଖି ମୁକ୍ତକୁମାର, ଦୌଡ଼ିଯାଇ ତା' ଆଗରେ ଛିଡ଼ାହୋଇ ପଚାରିଲା, ତୁ କିଏ ? କଣ ପାଇଁ ଏତେ ବ୍ୟସ୍ତ ହୋଇ ନିଶବ୍ଦ ରାତିରେ ଏକା ଏକା ପଳାଉଚୁ କହ ? ସୁଲକ୍ଷ୍ମୀ କହିଲା, ମୋତେ ବାଟ ଛାଡ଼ିଦିଅ । ମୋର ନାମ ହେଉଚି ସୁଲକ୍ଷ୍ମୀ । ମୁଁ ଯେଉଁ ଘରେ ବେଶି ଶ୍ରଦ୍ଧା ମନରେ ରହେ, ସେ ଘରେ ସେତେ ଶୁଭ ଘଟେ । ଏ ଘରକୁ ମୁକ୍ତକୁମାର ଆସିବା ଦିନରୁ ମୁଁ ଆସି ବିଶ୍ରାମ କରୁଥିଲି । ପୂର୍ଣ୍ଣିମୀ ଦିନ ତାକୁ କୋଳରେ ଧରୁଥିଲି । ସ୍ନେହର ସୂଚକ ରୂପେ ତା' ନାଭିରେ ଖଣ୍ଡିଏ ମୁକ୍ତା ଦେଇ ଛାଡ଼ୁଥିଲି । ହେଲେ, ଯେଉଁ ଦିନଠୁ ତା' ଗର୍ଭଧାରିଣୀର ରୂପ ଯୌବନକୁ ସେ ଲୋଭ କଲାଣି ସେଥିପାଇଁ ମୋର ଆଉ ଏ ଜାଗାର ଦରକାର ନାହିଁ ।

ସୁଲକ୍ଷ୍ମୀ ମୁହଁରୁ ଏପରି କଥା ଶୁଣି ମୁକ୍ତକୁମାର ତାଙ୍କ ପାଦ ଧରି ଅଜ୍ଞାନ ହୋଇ ପଡ଼ିଗଲା । ତା' ପରେ ସେ କଣ ହେଲା ଆଉ ତା'ର ଖିଆଲ ନାହିଁ । ମୁକ୍ତକୁମାରର ଏପରି ଅବସ୍ଥା ଦେଖି ବହୁତ ଲୋକ ତା' ପାଖରେ ଭିଡ଼ ଜମି ରହିଥାନ୍ତି । ବୁଢ଼ା କେଉଟ କେଉଟୁଣୀ ବି ପିଟା ବଟା କରୁଛନ୍ତି । ତା'ର ଚେତା ହେବାରୁ ସେ ଚାରିଆଡ଼କୁ ଚାହିଁ ଦେଖିଲା—ଆଉ ସେ ସୁଲକ୍ଷ୍ମୀଙ୍କର ରୂପ ଚିହ୍ନ ଦିଶୁନାହିଁ । ତେଣୁ ସେ କାନ୍ଦ ଉଠିବାରୁ ବୁଢ଼ା ବୁଢ଼ୀ ପଚାରିଲେ ଆରେ କ'ଣ ହେଲା ତୋର କହ ? ମୁକ୍ତକୁମାର କହିଲା, କାଲି ସକାଳ କହିବି । ଏହା କହି ସେ ଘର ଭିତରକୁ ଯିବାରୁ ଲୋକେ ଯେଝା ଘରକୁ ଗଲେ ।

ରାତି ପାହିବାରୁ ମୁକ୍ତକୁମାର ଉଠି ଗାଧୋଇ ଖାଇ ଘୋଡ଼ାରେ ଚଢ଼ି ଯାଇ ପଟ୍ଟନାୟକ ଘରେ ପହଞ୍ଚିଲା । କରଣ ବୁଢ଼ା

ମୁକ୍ତକୁମାରକୁ ଦେଖି ଆଦର ଯତ୍ନକରି ପଚାରିଲେ, ମହାଜନ ପୁଅର ପାଦ କମିତି ଗରିବ ଘରେ ପଡ଼ିଲା କେଜାଣି ? ମୁକ୍ତକୁମାର ଅତି କରୁଣ ସ୍ୱର କରି କହିଲା, ମୁଁ ଦେଖିଛି କାଲି ଗୋଟିଏ ସୁନ୍ଦରୀ ଝିଅ ପୋଖରୀରୁ ଗାଧୋଇ ପାଣି ନେଇ ଆପଣଙ୍କ ଘରକୁ ଆସିଲା, ସେ ଝିଅଟି କିଏ ? ବୁଢ଼ା କହିଲା, ମୋର ଝିଅ । ମୁକ୍ତକୁମାର କହିଲା, ମୁଁ ଟିକିଏ ତାଙ୍କ ସଙ୍ଗରେ ଦେଖା କରିବି । ତାଙ୍କୁ ଗୋଟିଏ କଥା ପଚାରିବା ଲାଗି ଏଠାକୁ ଆସିଛି । ଦୟାକରି ତାଙ୍କୁ ଡକାନ୍ତୁ । ଏହା ଶୁଣି ବୁଢ଼ା ଭିତରକୁ ଯାଇ ରାଜକନ୍ୟାକୁ ଡାକି ଆଣିବାରୁ ସେ ଆସି କବାଟ ପାଖରେ ଛିଡ଼ାହେଲା । ତାକୁ ଦେଖିବାମାତ୍ରେ ମୁକ୍ତକୁମାରର ହୃଦୟ ଅଧୀର ହୋଇ ଉଠିବାରୁ ସେ ଯାଇ ତା' ଗୋଡ଼ତଳେ ପ୍ରଣାମ କରି ପଚାରିଲା, ମୁଁ ଗୋଟିଏ କଥା ପଚାରିବାକୁ ଆସିଛି, ଆପଣ ସତ କରି କହନ୍ତୁ । ଆପଣ କୁମାରୀ ନା ସନ୍ତାନର ଜନନୀ ? ତା କଥା ଶୁଣି ରାଜକନ୍ୟା କାନ୍ଦ କାନ୍ଦ ହୋଇ କହିଲା, ମୁଁ ସନ୍ତାନର ଜନନୀ । ହେଲେ ମୋର ସନ୍ତାନ ନାହିଁ, ତାକୁ କିଏ ଚୋରି କରି ନେଇ ଯାଇଛି । ଏହା ଶୁଣି ମୁକ୍ତକୁମାର ମନରେ ସାହସ ହେଲା । ସବୁ ଘଟଣା ପଚାରି ବୁଝି କହିଲା, ଆପଣ ମୋର ଜନନୀ ବୋଲି ମୁଁ ପ୍ରମାଣ ପାଇଛି । ତେଣୁ ମୁଁ ଦୌଡ଼ି ଆସିଛି । ଆଜ କଷ୍ଟରେ କଷ୍ଟକରି ରହନ୍ତୁ । ମୁଁ ଶୀଘ୍ର ଏହାର ପ୍ରତିକାର କରି ନେଉଟାଇ ନେଇଯିବି । ଏହା କହି ମୁକ୍ତକୁମାର ଜନନୀର ପାଦଧୂଳି ନେଇ, କରଣ ବୁଢ଼ା ବୁଢ଼ୀଙ୍କି ପ୍ରଣାମ ଜଣାଇ ଲେଉଟିଗଲା ।

ଘରକୁ ଯାଇ ଶୁଣିବାକୁ ପାଇଲା, କିଏ ଯାଇ କହିଲା ଘଟନାସୂଚକ ବୁଢ଼ା ଝିଅ ସାଙ୍ଗରେ ମୁକ୍ତକୁମାର କଥା କହୁଛି । କୁଣ୍ଡ ବାଇଦ କଥା ଶୁଣି କେଉଟ କେଉଟୁଣୀଙ୍କର ମନ କୁଣ୍ଠେ ମୋଟ

ହେଉଛି । ପଣ୍ଡାନାୟକ ବୁଢ଼ାର ଝିଅ ଆମ ଘରକୁ ବୋହୂ ହୋଇ ଆସିବ । ସେଥିପାଇଁ ପୁଅ ଯାଇ କଥାକରୁଛ । ମୁକ୍ତକୁମାର ଚହଳବାରୁ କେଉଟୁଣୀ ବୁଢ଼ୀ କହିଲା, ଆରେ ପୁଅ ! କଅଣ ଜବାବ କଲୁ ? ବୁଢ଼ୀ ଝିଅ ଦବାକୁ ମଞ୍ଜିଲା । ମୁକ୍ତକୁମାର କହିଲା, ଆଜ ସଞ୍ଜବେଳକୁ ନୃସିଂହନାଥ ମନ୍ଦିରରେ ଠାକୁରଙ୍କୁ ଛୁଇଁ ଭାଗବତ ପୋଥି ଧରି ମୁଁ ବୁଢ଼ା ବୁଢ଼ୀ ଓ ସେ ବୁଢ଼ା ବୁଢ଼ୀ ବହେଁ ସତ୍ୟ କରିବା କଥା ହେଲା । ସଞ୍ଜବେଳକୁ ସେଇଠିକି ଯିବା । ସେଇଠି ସବୁ ଛିଡ଼ିବ । ଏ କଥା ଶୁଣି ବୁଢ଼ାବୁଢ଼ୀ ଖୁସି ହୋଇ ରହିଲେ ।

ସନ୍ଧ୍ୟାବେଳକୁ ବଡ଼ ବଡ଼ ଗଣ୍ୟମାନ୍ୟ ଲୋକଙ୍କୁ ଡକାଇ ନୃସିଂହନାଥ ମନ୍ଦିରରେ ମୁକ୍ତକୁମାର ସଭାଟିଏ କଲା । କେଉଟ ବୁଢ଼ା ବୁଢ଼ୀ ସେଠାକୁ ଗଲେ । ପଣ୍ଡାନାୟକ ବୁଢ଼ାର ଝିଅକୁ ନେଇ ଆସିଲା । ଭାଗବତ ପୋଥି ଥୁଆହେଲା । ବୁଢ଼ା ମନେ ମନେ ଖୁସି ହୋଇ ବୁଢ଼ୀକି କହୁଥାଏ, ପୁଅଟା ପିଲା ହେଲେ କଣ ହେବ, ବୁଦ୍ଧିଟା ପକ୍କା । ପିଲାହୋଇ ପିଲାଙ୍କ ବାପ ପରି କାର୍ଯ୍ୟ କରୁଛି । ଏବେବେଳେ ପକ୍କାପକ୍କ ଜବାବ କରାଇନେବାକୁ ବସିଛି । ଏହି ସମୟରେ ସଭାକାର୍ଯ୍ୟ ଆରମ୍ଭ ହେବାରୁ ଭଦ୍ରଲୋକ-ମାନେ କହିଲେ, କେଉଁ କାରଣ ନେଇ ଆଜିର ଏ ସଭା ହୋଇଛି, ସେ କଥା ଆବାହକ କୁହନ୍ତୁ । ଏହା ଶୁଣି ମୁକ୍ତକୁମାର ଉଠି କେଉଟୁଣୀର ହାତ ଧରି ନୃସିଂହନାଥଙ୍କ ସାମନାରେ ଛିଡ଼ା କରାଇ ଦେଇ କହିଲା, ଦେଖ୍ ମା' । ଏଠାରେ ନୃସିଂହନାଥ ବଡ଼େ ହୋଇଛନ୍ତି । ପଞ୍ଚପରମେଶ୍ୱର ବସିଛନ୍ତି । ସେଠାରେ ଭାଗବତ ପୋଥି ଗାଦି ଥୁଆ ହୋଇଛି । ତୁ ଏଙ୍କୁ ଛୁଇଁ ଦେବାଳୟରେ ସତ୍ୟ କରି କହୁଛୁଟି ତୁ ମୋର ଗର୍ଭଧାରଣୀ ମା' କି ନୁହଁ ? ଏ କଥା ଶୁଣି ବୁଢ଼ୀର ଛାତି ଧଡ଼ପଡ଼

ହୋଇଗଲା । ପାଞ୍ଚି ଖଣ୍ଡ ମାରିଲା । ମିନ୍ତ କହିବାକୁ ଗଲାବେଳେ କଏ ଯେପରି ଗୋଟା ଚିପି ଧରିଲା ପରି ଲାଗିଲା । ସେଇଠୁ ସେ ପାଞ୍ଚି ଅଙ୍ଗ ଅଙ୍ଗ କରି କହିଲା—ଜାଇଁରେ ପୁଅ, ମୁଁ ତୋତେ ଜନ୍ମ କରିନାହିଁ । ବୁଢ଼ା କୁଆଡେ ମାଛ ଧରିବାକୁ ଯାଇଥିଲା, ସେ ସେଇ ଜାଗାରୁ ତୋତେ ପାଇ ଜବ ଆଣି ମୋତେ ଦେବାରୁ ମୁଁ ତୋତେ ପାଳନପାଳ କରିଛି । ତା'ପରେ ମୁକ୍ତକୁମାର କରଣ ବୁଢ଼ାର ଝିଅକୁ ଶପଥକରି କହିବାକୁ କହିବାରୁ ସେ କହିଲା—ଦଶମାସ ଗର୍ଭଥିଲାବେଳେ ମୋ ସ୍ୱାମୀ ନୌକାରେ ଚଢ଼ାଇ ମୋତେ ବାପ ଘରକୁ ନେଉଥିଲେ । ବାଟରେ ଝଡବର୍ଷା ହେବାରୁ ମାଝିମାନେ ପଳାଇଲେ । ମୁଁ ଆସି ଗୋଟିଏ ଗଛମୂଳରେ ବସିଛି, ପ୍ରସବଯନ୍ତ୍ରଣା ଆସିଲା । ଏହାଦେଖି ମୋ ସ୍ୱାମୀ ଧାଈ ଖୋଜିବାକୁ ଗଲେ । ମୁଁ ଏଇବେଳେ ପିଲାଟିଏ ଜନ୍ମକରି ଖୋଇ ନଈକୁ ଧୋଇହେବାକୁ ଗଲି । ଲେଉଟି ଆସି ଦେଖିଲି ପିଲାଟି ନାହିଁ । ସେଇଠୁ କନ୍ଦାକଟା କରୁଛି, ମୋ ସ୍ୱାମୀ ଆସି ସବୁଘଟଣା ଶୁଣି ମୋତେ ଅଲକ୍ଷଣୀ ବୋଲି ସେ ବଣରେ ଛାଡ଼ିଦେଇ ଚାଲିଗଲେ । ତା'ପରେ ଏଇ ଘଟନାସ୍ଥଳ ବୁଢାଙ୍କର ଭେଟ ହେବାରୁ ସେ ଦୟାକରି ଆଣି ମୋତେ ଝିଅପରି ପାଳିଛନ୍ତି ।

ଏହାକହି ସେ ବସିବାରୁ ମୁକ୍ତକୁମାର କହିଲା, ପଞ୍ଚାୟତ ମହୋଦୟମାନେ ! ଆପଣମାନେ ସବୁକଥା ଶୁଣିଲେ । ବର୍ତ୍ତମାନ ମୋ ସମ୍ବନ୍ଧରେ କ'ଣ କୁହନ୍ତି ? ପଞ୍ଚାୟତ କହିଲେ—ଆମରଏଥିରୁ ଅନୁମାନ ହେଉଛି, ତୁମେ ପ୍ରକୃତରେ ଏହି କରଣ ଘର ଝିଅର ଗର୍ଭଜାତ ସନ୍ତାନ । ସେଇଠୁ ମୁକ୍ତକୁମାର କହିଲା, କାଲି ରାତିରେ ମୋତେ ସ୍ୱପ୍ନଶ୍ରୀ ଦେବୀ ଏ ଘଟଣା କହିବାରୁ, ମୁଁ ମୋର ପ୍ରକୃତ ମା'ଙ୍କୁ ପାଇ ପାରିଛି । ଏହା କହି ସେ ମା' ମା' ଡାକିଯାଇ ନିଜ ମା'ଙ୍କୁ କୁଣ୍ଢେଇ ଧରିଲା । ମା ମଧ୍ୟ ହାତନିଧି ପାଇଲାପରି

ହୋଇ ପୁଅକୁ ଧରି ଗାଲରେ ଚୋ'କ ଥାପିଦେଲା । ସେଇଠୁ ପଞ୍ଚାପୁତମାନେ କହିଲେ, ଏଥର ମାତା ପୁଅ ଦୁହେଁ ତୁମର ଯୋଉ ଜାଗାକୁ ଇଚ୍ଛା ଯାଇପାର । ଏହା କହି ସେମାନେ ଚାଲିଗଲେ । ମୁକ୍ତକୁମାର ମା'କୁ ପାଇ କେଉଁଠି ବୁଢ଼ା ବୁଢ଼ୀଙ୍କି କହିଲା, ତୁମେ ମାନେ ବହୁତ କଷ୍ଟକରି ମୋତେ ପାଳିଷ କରିଚ । ବର୍ତ୍ତମାନ ମୋ ସ୍ୱାନେ ଅନେକ ଧନରତ୍ନର ମାଲିକ ହୋଇଚ । ସେଇଗୁଡ଼ିକ ନେଇ ସୁଖରେ ଥାଅ, ମୁଁ ମୋ ମା' ସଙ୍ଗରେ ଯାଉଚି । ଏହାକହି ସେ ମା'କୁ ନେଇ କରିଣ ଘରେ ବାହାରିକ ଗଲା, ମା'ଠାରୁ ନିଜ ପିତା ପ୍ରଭୃତିଙ୍କ ପରିଚୟ ପାଇ ତହିଁ ଆରଦିନ ମା ପୁଅ ଦିହେଁ ବାହାରିଲେ ।

ବାଟରେ ଯାଉ ଯାଉ ମା' ପୁଅ ଦିହେଁ ଅନେକ ଦୁଃଖସୁଖ କଥାହେଲେ । ଏମିତି କରି ଦି'ଦିନବାଦେ ଯାଇ ନିଜ ଗାଁରେ ପହଞ୍ଚିଲେ । ଗାଁରେ ପହଞ୍ଚି ଦେଖିଲାବେଳକୁ ଘର ନାହିଁ କି ଚାଳ ନାହିଁ । ଖାଲି ପଡ଼ିଆଟା ପଡ଼ିଛି । ତାହାଦେଖି ମୁକ୍ତକୁମାର ମା'କୁ ଆମଘର କାହିଁ ପଚାରିବାରୁ, ମା' କହିଲା, ଏଇ ଜାଗାରେ ତ ଆମର ଘର ଥିଲା । କୁଆଡ଼େ ଗଲା, ବାପା ଗୋସିବାପ କୁଆଡ଼େ ଗଲେ, ମୁଁ କେମିତି କହିବି ? ଆଖପାଖ ଲୋକଙ୍କୁ ପଚାର ବୁଝ । ଏହା ଶୁଣି ମୁକ୍ତକୁମାର ଟିକିଏ ଭାବି ମା'କୁ କହିଲା—ହଉ, ଆମେ ଏ ଗାଁରେ ଗୋଟିଏ ଘରଭଡ଼ା ନେଇ ରହିବା । ଗାଁ ଲୋକତ ଆମକୁ କେହି ଚିହ୍ନନ୍ତି ନାହିଁ । ତେଣୁ ଲାଜ ଅପମାନର କଥା ନାହିଁ । ତା' ହେଲେ କିଛିଦିନ ପରେ ଅବଶ୍ୟ ବାପା ବଡ଼ ବାପାଙ୍କ ଖବର ମିଳିଯିବ । ମୁକ୍ତକୁମାର କଥାଟା ମା' ମନକୁ ପାଇଲା । ସେ ଦିହେଁ ଘରଖଣ୍ଡିଏ ଭଡ଼ାକରି ରହିଥାନ୍ତି । ପଡ଼ଶା ଲୋକଙ୍କୁ ପଚାରି-ବାରୁ ସେମାନେ କହିଲେ, ସାଧବ ଘର କଥାକ'ଣ ପଚାରୁଛ ବାବୁ !

ତାଙ୍କର ସାନ ବୋହୂଥିଲା କୁଳଲକ୍ଷ୍ମୀ । ବୁଢ଼ାଟାକୁ କୋଳ ଦେଇ ଧରିବ ଯେ ପୁଅକୁ କହି ବୋହୂଟାକୁ ଘରୁ ତଡ଼ିଦେଲା । ଯେମିତ ସାନବୋହୂ ଯାଇଚ ସେଇଠୁ ତାଙ୍କ ଦାପଦଶା ଲାଗିଲା । ଘରଦ୍ୱାର ପୋଡ଼ିଗଲା । ବୋଇତ ବୁଡ଼ିଗଲା । ସେମାନେ ଅଁଟକା ଦାଣ୍ଡର ଭିକାରି । ପଡ଼ଶା ଲୋକଙ୍କ ପିଣ୍ଡାରେ ପଲଘର କରି ରହିଛନ୍ତି । ପାଞ୍ଚପୁଏ ପାହାଡ଼ରୁ କାଠ ବୋହି ହାଟ ଯାହା ପାଉଛନ୍ତି ସେଥିରେ ଜାଉ ପେଜ କରି ଖାଇ ଚଳୁଛନ୍ତି । ଏକଥା ଶୁଣି ମୁକ୍ତକୁମାରର ମନ ବଡ ଦୁଃଖ ହେଲା । ସଞ୍ଜବେଳକୁ ଖବର ନେଇ ଯାଇ ଦେଖିଲା, ପାଞ୍ଚଟି ଲୋକ କାଠ ବାନ୍ଧେଇ ଯାଉଛନ୍ତି । ସେଇଠୁ ତାଙ୍କୁ ଡାକ କହିଲା, ଆପଣମାନେ ତ କାଠ ବିକୁଚନ୍ତି, ମୋତେ ଏଇ କାଠତକ ଦିଅନ୍ତୁ । ଯାହା ମୂଲଦର ମୁଁ ଦଉଚି । ସେଇଠୁ ସେମାନେ କହିଲେ—ଆଜ ଅନ୍ୟ ଲୋକଙ୍କୁ ଜବାବ ଦେଇଚୁ ତାଙ୍କୁ ଦବାକୁ ହବ । ଆପଣଙ୍କୁ କାଲ ଆଣିଦେବୁ । ଏହା କହି ସେମାନେ ଠିକଣା ନେଇ ଗ୍ଲଲଗଲେ ।

ଏଣେ ତ ପୂର୍ଣ୍ଣମୀକୁ ପୂର୍ଣ୍ଣମୀ ମୁକ୍ତକୁମାର ନାକରୁ ମୂଲ୍ୟବାନ ମୁକ୍ତାଟିଏ ମିଳିବାରୁ ତାକୁ ବିକ ସେ ବହୁତ ଟଙ୍କା ପାଉଚି । ସିନ୍ଧୁକରେ ଟଙ୍କା ଭରା । ତହିଁ ଆରଦିନ ସଞ୍ଜବେଳକୁ ଜବାବ ମୁତାବକ । ପାଞ୍ଚଜଣ କାଠ ପାଞ୍ଚ ଭାର ନେଇ ଯାଇ ମୁକ୍ତବାବୁଙ୍କୁ ଡାକିବାରୁ ସେ ଆସି କାଠଭାରି ପଚାରିଲା, ମୂଲ କେତେ ? ଏମାନେ କହିଲେ ଟଙ୍କାଏ କରି ଦଉଚନ୍ତି ସମସ୍ତେ । ଆପଣ ଯାହା ବେଶି କମ୍ ଦେବେ ଆପଣଙ୍କ ଇଚ୍ଛା । ସେଇଠୁ ମୁକ୍ତକୁମାର ଘରୁ ପାଞ୍ଚଟି ଟଙ୍କା ଆଣି ଦେଲାବେଳେ ମା'କୁ ଡାକ କହିଲା, ମା ! ଚହ୍ନିଲୁ ଦେଖି ଏମାଙ୍କ ଭିତରେ ମୋ ବାପା, ବଡବାପା ଅଛନ୍ତି କି ? ସାନବୋହୂ ଆସି କବାଟ ପାଖରେ ଛିଡାହୋଇ ଚହ୍ନିଲା, ସେଇ

ହୁଅନ୍ତି ଗେରସ୍ତ ଓ ଦେଢ଼ଶୁର । ମୁକ୍ତକୁମାର ତାଙ୍କୁ ଟଙ୍କାଦେଇ ବିଦାୟ କଲାବେଳେ ଏମାନେ ପଚାରିଲେ, ଆଜ ଆପଣଙ୍କର କାଠ ଦରକାର ହେବନି ? ମୁକ୍ତକୁମାର କହିଲା, କାଲିକୁ ଭଲ କାଠ ଆଣିବେ । ମୁଁ କିଣିନାମ ଦେବ । ସେଇଠୁ ଏମାନେ ଯିବାକୁ ମା’ ପୁଅ ବଡ଼ ଦୁଃଖ ମନରେ ରହିଲେ ।

ତହିଁଆରଦିନ ପୁଣି କାଠ ପାଞ୍ଚକାଣ୍ଡ ଆଣିବାରୁ ମୁକ୍ତକୁମାରକୁ ତା’ ମା’ ଆଙ୍ଗୁଳି ଦେଖାଇ ଚିହ୍ନାଇଦେଲା ଏଇ ତା’ର ବାପ, ଏଇ ତା’ର ଜେଜି ଖୁଡ଼ୀ । ତା’ପରେ ମୁକ୍ତକୁମାର ସେମାନଙ୍କୁ ଟଙ୍କା ଦେଇ ଦେଇ କହିଲା ଆପଣମାନଙ୍କ ରୂପ ଲାବଣ୍ୟ ଦେଖିଲେ ମନେ ହେଉଛି ଭଦ୍ରଲୋକ ପରି । ଆପଣମାନେ କାଠ ହକା କାର୍ଯ୍ୟରୁ ଅନ୍ୟ କିଛି କାରବାର କରୁନାହାନ୍ତି ? ସେ କଥାଶୁଣି ବଡ଼ ଭାଇ କହିଲା, ବାବୁ ! ଆପଣ ପିଲାଲୋକ । ଭାଗ୍ୟରେ ଯେଉଁ ବଡ଼ମନା ଜାଣି ନାହାନ୍ତି । ବାପା ମା’ଙ୍କ ଦୋଷରୁ ପୁଅ ଝିଅ ଯେ କି ଦୁଃଖ ପାଆନ୍ତି ଜାଣନ୍ତି ନାହିଁ । ଆମର ଆଗେ ବଡ଼ କାରବାର ଥିଲା । ଆମ ବାପ ଦୋଷରୁ ସବୁ ଯାଇଛି । ଅବକା ପୁଞ୍ଜି ଅଭାବରୁ ଆମେ କାଠ ବେଞ୍ଚିକରି ଖାଉଚୁ । ମୁକ୍ତକୁମାର କହିଲା, ଆପଣମାନଙ୍କ କଷ୍ଟ ଦେଖି ଦୁଃଖ ଲାଗେ । ସେଥିପାଇଁ କହୁଛି ମୁଁ ଦ’ହଜାର ଟଙ୍କା ଦଉଚି । ଖଣ୍ଡିଏ ଘର ଭଡ଼ା କରି ସେଠାରେ ଦ’ଭାଇ କାରବାର କର । ଆଉ ଦ’ଭାଇ ନିଜ ଜାଗାରେ ଘର ତୋଳ । ଯାହା ଟଙ୍କା ଲାଗିବ ମୁଁ ଦେବି । ପଛକୁ ଅବସ୍ଥା ସୁଧୁରି ଗଲେ ମୋ ଟଙ୍କାକୁ ସୁଝିଦେବ । ଏହାଶୁଣି ସେମାନଙ୍କ ଆନନ୍ଦର ସୀମା ରହିଲା ନାହିଁ । ସାଙ୍ଗେ ସାଙ୍ଗେ ରାଜି ହୋଇ ତାକୁ କଲ୍ୟାଣ କରିଗଲେ । ସେଦିନ ରାତିରେ ପାଞ୍ଚଭାଇ ବିଚାର କରି ଖଣ୍ଡିଏ କୋଠା ଭଡ଼ାକରି ଲୁଗା ଦୋକାନ ଓ ତେଜରାତି ଦୋକାନ କରିବାର ଯୋଗାଡ଼ କଲେ । ତହିଁ ଆରଦିନ ଆସି ବଡ଼ଭାଇ

ମୁକ୍ତକୁମାରଠାରୁ ତିନ ହଜାର ଟଙ୍କା ନେଇଗଲେ । ତେଣିକି ଚାଲିଲା କାରବାର ।

ଏଣେ ସାନ ଝି' ଭାଇ ନିଜଘର ଉପରେ ଘର ଉଠାଇବାକୁ ଲାଗିଲେ । ଜଣେ ଭାଇ ବାହାର ହଜଦାର ଯୋଗାଡ଼ କଲେ । ଘରେ ବୁଢ଼ା ବସି ଜୁଳୁ ଜୁଳୁ କରି ସବୁ ଦେଖୁଥାଏ । ଏପରି ବଢ଼ି ଚାଲିବା କାରବାର ଦେଖି ପଚାରିଲେ, ଆରେ ! ତୁମେସବୁ ଏପରି ଅଗ୍ରବଳକା କାର୍ଯ୍ୟ କରି ଚାଲିଛ, ଟଙ୍କା ପାଉଛ କୁଆଡ଼ୁ ? କାଠ ହଡ଼ାରୁ କୋଠା ଉଠାଇବା ତ ସହଜ କଥାନୁହେଁ । ତୁମେ ପାଞ୍ଚ ଭାଇ କଣ ବ୍ୟେଷ କଲକି ? ବଡ଼ପୁଅ କହିଲା, ବ୍ୟେଶ କରିବୁ କାହିଁକି ? ଜଣେ ଶେଠଲୋକ ଆମର ଦୁଃଖ ଦେଖି ଦୟାକରି ଟଙ୍କା ଦେଉଛି । କାରବାର କରି ତା' ଟଙ୍କା ପଇଠ କରିଦେବୁ । ତା' କଥା ଶୁଣି ବୁଢ଼ା କହିଲେ, ଆରେ କଏ ଗୋଟାଏ ଧର୍ମପୁଅ ବାପ ଚହଟିଲରୁ ଟଙ୍କା ବ୍ୟେଭାଇ ଆଣିଛୁ କି କ'ଣ ତାର ଠିକଣା ନାହିଁ । ତମେ ତା ପାଖରୁ ଟଙ୍କା ବୋହି ଆଣୁଛ, ଦଲିଲ ଲେଖାପଢ଼ା କରୁଛ ନାହିଁ । ଶେଷରେ ଯେବେ ବିପଦ ଘଟାଇ ବସିବ ସେ ମଜା ବୁଝେଇଦେବ । ଅଜକା ଯୋଉ କଣ୍ଟା କଣ୍ଢ ଦୋଳମ ଯୁଗ ଚାଲିଛି, ଧରା ପଡ଼ିଲେ ସେ କହିଦେବ ମୁଁ ପୁଅଙ୍କ ଠେଇଁ ଟଙ୍କା ଥୋଇଛି । ତା ପରେ ହାତକଡ଼ି । ଗାରଦ ଜେଲ । ତେଣିକି ମାମୁଁ ଘରେ ଭାତ ଖାଉଥା । ତା ଟଙ୍କାତକ ନେଇ ଶୀଘ୍ର ତାକୁ ଲେଉଟାଇ ଦେଇ ଆସ ।

ଏ କଥା ଶୁଣି ମଝିଆଁ ପୁଅ କହିଲା, ତୁମ କଥା ଆଉ ଯୋଗା ହେବନାହିଁ । ତୁମର କଥା ମାନ ସାନବୋଉକୁ ଘରୁ ତଡ଼ିଦେଲୁ ଯେ ଘରୁ ଲକ୍ଷ୍ମୀ ଛାଡ଼ି ଚାଲିଗଲେ । ସୁନାଘର ଆମର ଚୂନା ହୋଇଗଲେ । ଏବେ ପୁଣି କେଉଁପରି କୁପରାମର୍ଶ ଦେଉଛ । ତୁମ କଥା ଆଉ

ଶୁଣାଯିବ ନାହିଁ । ଏହା ଜନ୍ମ ସେମାନେ ବେପାର ବଣିଜ କରିବା ଓ କୋଠା ଉଠାଇବାରେ ଲାଗିଲେ ।

ଏଣେ ଦମାଦମ ବଣିଜ ପାଙ୍ଗକୁ ତେଣେ ଧମାଧମ୍ କୋଠା ଉଠିଗଲା । ବଣିଆ ପୁଅଙ୍କ କେଉଁସାର ସବୁ ବୁଝନ୍ତି । ଅଳ୍ପ ଦିନରେ ଉପାକରି ଦରିଦ୍ର ଦଶାକୁ ସଫା କଲେ । କୋଠା ଉଠା ସରିବାରୁ ଦିନେ ଭାଇମାନେ ଆସି ମୁକ୍ତକୁମାରକୁ କହିଲେ, ବାବୁ ! ତୁମ ଦୟାରୁ କାରବାର ବଢ଼ିଲାଣି । କୋଠି ବି ଉଠିଗଲା । ଅବକା ଯୋଉ କାମ କରିବାକୁ କହିବେ ସେହିପରି କରିବୁ । ମୁକ୍ତକୁମାର ଆଗେ କହିଲା, କୋଠା ପ୍ରତିଷ୍ଠା କର । ଗୃହ ପ୍ରବେଶ ହେଉ । ତା'ପରେ ଯାହା କରିବାକୁ ହେବ ମୁଁ କହିବି । ସେଇଠୁ ଆସି ଏମାନେ ଭଲଦିନ ଦେଖି ଘର ପ୍ରତିଷ୍ଠା କାର୍ଯ୍ୟ ଆରମ୍ଭ କଲେ । ବନ୍ଧୁବର୍ଗ ସବୁ ଆସିଲେ । ମୁକ୍ତକୁମାର ସକାଳୁ ଆସି ସବୁ ତଦାରଖ କରୁଥାଏ । ବେଳ ସରଳ ବୁଢ଼ୀବୋହୂଙ୍କୁ ନେଇ ବୁଢ଼ୀ ଯୋଗାଡ଼ ସଜାଡ଼ା କରୁଥିଲାବେଳେ ମୁକ୍ତକୁମାରକୁ ନେଇ ପୁଅମାନେ ଚିହ୍ନାଇ କହିଲେ, ମା ! ୟାଙ୍କର ଟଙ୍କାରେ ଆଜି ଆମର କୋଠା ଉଠିଛି । କାରବାର ଚାଲିଛି । ଏହା ଶୁଣି ବୁଢ଼ୀ ମୁକ୍ତକୁମାରକୁ କଲ୍ୟାଣ କଲାବେଳେ ମୁକ୍ତକୁମାର ପଚାରିଲା, ଆଚ୍ଛା ଆଈ ! ତୁମର ତ ପାଞ୍ଚପୁଅଙ୍କୁ ଦେଖୁଛି, ଚାରୋଟି ବୋହୂ କାହିଁକି ? ସାନ ପୁଅକୁ ବାହା କରେଇ ନାହଁ ନା କଅଣ ? ମୁକ୍ତକୁମାର ମୁହଁରୁ ଏ କଥା ଶୁଣିବା ମାତ୍ରେ ବୁଢ଼ୀ ଭେ ଭେ କରି କାନ୍ଦପଟେଇ ଲୁହ ପୋଛିଲା । ଆଉ ଚାରି ଯା, ସାନପୁଅ ଏମାନେ କଇଁ କଇଁ ହୋଇ କାନ୍ଦ-ପଟେଇଲେ । ବଡ଼ପୁଅ, ସାନବୋହୂକୁ କିମିତି ଚଢ଼ ଦିଆଯାଇଛି, ସବୁ କଥା କହିବାରୁ ମୁକ୍ତକୁମାର କହିଲା—ହଉ, ଆଜି ଶୁଭଦିନରେ କାନ୍ଦ ବୋବାଳି କରନାହିଁ । ବରଂ ମୋ ମା'କୁ ଏଠାକୁ ଡେକ

ଆସ । ସେ ଆସି ସ୍ୱାଙ୍କ ସାଙ୍ଗରେ ମିଶି କାର୍ଯ୍ୟକୁଶଳ କରୁ । କାର୍ଯ୍ୟଶେଷ ହୋଇଗଲେ ଆମେ ମା ପୁଅ ବୁଲିଯିବୁ । ଏ କଥା ଶୁଣି ସଙ୍ଗେ ସଙ୍ଗେ ସାଧବ ପୁଅମାନେ ସୁଆଁଶ ଉଠେଇ ସାନ ବୋହୂକୁ ସେଠୁ ନେଇ ଆସିଲେ ।

ସାନବୋହୂ ଆସିବାରୁ ଯାଆମାନେ ତାକୁ ସୁଆଁଶରୁ ଓହ୍ଲାଇ ଆଣିବାକୁ ଯାଇ ତା' ହାତରେ ଥିବା କଙ୍କଣ ଦେଖି ଚମକି ଉଠିଲେ । କହିଲେ, ଆରେ ଇଏତ ଆମ ସାନବୋହୂକୁ ଦେଇ-ଥିବା କଙ୍କଣ । ଇଏ କୁଆଡ଼ୁ ପାଇ ନାଇଁ । ଏହାକହି ଯେମିତି ସୁଆଁଶରୁ ଉତାର ଆଣିଲେ, ମଝିଆ ଯା କହିଲା—ଆରେ ସାନ-ବୋହୂ ପରି ତ ସ୍ୱା ବାଁ ଓଠରେ ତିଳଚିହ୍ନ ଅଛି । ବଡ଼ବୋହୂ ଆମ ସାନ ବୋହୂଟିଲା ? ଏତେଦିନ କୁଆଡ଼େ ଥିଲୁବୋଲି କହି ବଡ଼ ଯାଆ ଯାକ ଡାକ ପକେଇଲେ—ମା' ମା' ଆମ ସାନବୋହୂ ଆସିଛି, ଦେଖିଯାଅ ଦେଖିଯାଅ । ଏମିତି ସବୁ ହୁଲହୁଳି ପଡ଼ିଗଲା । ସାନବୋହୂ ଶାଶୁ ଦେଢ଼ଶୁରଙ୍କୁ ପ୍ରଣାମ କଲା । ସାନପୁଅ ଆସି ମୁକ୍ତକୁମାରକୁ କାଖକୁ ଟେକି ନେଇ ତା ଗାଲରେ ଚୁମା ଦେଲା । ଏମିତିକରି ଧୁମଧାମରେ ପ୍ରତିଷ୍ଠା ବଧି ସରିବାରୁ, ବ୍ରାହ୍ମଣ ଭୋଜନ ସଇଲା । ତା'ପରେ ବୁଢ଼ୀ, ବଡ଼ ବୁଢ଼ ଯା'ମାନେ, ସାନବୋହୂ ଓ ମୁକ୍ତକୁମାରକୁ ନେଇ ବୁଢ଼ା ପାଖକୁ ଗଲେ । ସାନବୋହୂ ଯାଇ ବୁଢ଼ାକୁ ପ୍ରଣାମ କଲା । ମୁକ୍ତକୁମାର ବୁଢ଼ା ପାଦତଳେ ପ୍ରଣାମକରି ଛିଡ଼ା ହେବାରୁ ବୁଢ଼ା ପଚାରିଲା, ଏମାନେ କିଏ ? ବୁଢ଼ୀ ମୁହଁମୋଡ଼ି କହିଲା' ମଲାମୋର ! ବୋହୂ ନାତିଙ୍କୁ ଚିହ୍ନି ପାରୁନା । ଇଏପରା ଆମ ସାନବୋହୂ, ସିଏ ତା ପୁଅ ମୁକ୍ତକୁମାର । ସେଇତ ଟଙ୍କା-ପଇସା ଦେଇ କୋଠା ଉଠାଇ କାରବାର ପୁଣି କରେଇଲା ବୁଢ଼ୀ-ଠାରୁ ଏକଥା ଶୁଣି ବୁଢ଼ା ଭାବା ହୋଇ କନ୍ଦ କାଢ଼ଦେଲା

ମୁକ୍ତକୁମାରକୁ ଅନାଇଁ ଆରେ ନାଣ୍ଡ ବୋଲି କହି ସେ ଆଖିକାଢ଼ି, ଜିଭକାଢ଼ି ଅବାକ ହୋଇଯାଇଛି । ଆଜ ପାଟିକ ଜିଭ ମଣିନାଇଁ ନ ଆଖି ବୋଜିହି ନାହିଁ । ବୁଢ଼ା ସେଇଠି ପଥର ପରି ତଳ ପଡ଼ିଛି, ତାହାର ଯାଇଛି ପ୍ରାଣବାୟୁ ।

ପୁଅମାନେ ଦୌଡ଼ିଆସି ଦେଖିଲା ବେଳକୁ ବୁଢ଼ା ଜିଭକାଢ଼ି ମରିଯାଇଛି । ସେଇଠୁ ସେମାନେ ବୁଢ଼ାକୁ ନେଇ ପୋଡ଼ିଦେଲେ । ସାନବୋହୂ ଓ ମୁକ୍ତକୁମାରକୁ ନେଇ ପାଞ୍ଚଭାଇ ସୁଖରେ ସଂସାର କଲେ । ଶେଷକୁ ବୁଢ଼ା ଯେଉଁଠି ଜିଭକାଢ଼ି ମରିଥିଲା, ସେଇଠି ବୁଢ଼ାପର ପଥର ମୂର୍ତ୍ତିଟିଏ ଗଢ଼ି ମୁକ୍ତକୁମାର ଥୋଇ ଦେଇଛି, ବୁଝିଲୁଟି ଅବୋଲକର ?

“ନଭୁକ୍ତକର୍ମାଣିକ୍ଷୀୟନ୍ତେ କଳ୍ପକୋଟି ଶତୈରପି
ଅବଶ୍ୟ ମେବ ଭୋକ୍ତବ୍ୟଂ କୃତକର୍ମଂ ଶୁଭାଶୁଭଂ ।”

ମଣିଷ ଯେଉଁ ଧର୍ମ ଓ ଅଧର୍ମ କାର୍ଯ୍ୟ କରିଥିବ ସେହି ଅନୁସାରେ ସେ ତା'ର ଜନ୍ମ ଜନ୍ମାନ୍ତରେ ହିଁ ଉକ୍ତ ଫଳକୁ ଭୋଗ କରିବ । ବୁଢ଼ା ଯେପରି ଅବିବେକୀ କାର୍ଯ୍ୟ କରିଥିଲା, ସେହି ପ୍ରକାର ଅକାଳ ମୃତ୍ୟୁରେ ଜୀବନ ଦେଲା । ଏହି ମୂର୍ତ୍ତିକୁ ଦେଖି ଅନ୍ୟାନ୍ୟ-ଲୋକଙ୍କର ଶିକ୍ଷାହେଉ, ଏହି ଉଦ୍ଦେଶ୍ୟରେ ମୁକ୍ତକୁମାର ସେ ଜିଭଜପୁଡ଼ା ସୌଦାଗରର ପଥର ମୂର୍ତ୍ତି ଗଢ଼ି ସେଇଠି ଥୋଇ ଦେଇଛି । ଜାଣିଲୁରେ ଅବଲୋକର କହି ଗୋସାଇଁ ବଳୁଟି ଶେଷକରି ଶୋଇବାକୁ ଗଲେ ।

—※—

# ଚର୍ମବେଶୀ ମନୁଷ୍ୟ କଥା

ତା' ପରଦିନ ଗୋସେଇଁ ଅବୋଲକରା ଦିହେଁ କାଞ୍ଚି ସହର ଆଡ଼କୁ ଆଗେଇଲେ । କିଛିଦୂର ଯିବା ପରେ ବାଟରେ ଗୋଟିଏ ପୋଖରୀ ଓ ତା' ପାଖରେ ଦେବୀ ମନ୍ଦିରଟିଏ ଦେଖିଲେ ! ଜାଗାଟି ବେଶ୍ ମନୋହର ଦେଖି ଗୋସେଇଁ କହିଲେ, ଅବୋଲକରା ! ଆଜି ଏଇ ଜାଗାରେ ବସା କରିବା । ମୁଁ ଅବୋଲକରା ଗଣ୍ଠିଲି ବୋଝକୁ ନେଇ ସେ ମନ୍ଦିରର ବୃଦ୍ଧମଠରେ ଥୋଇଲା । ଗୋସେଇଁ ଅବୋଲକରାକୁ ଟଙ୍କାଟିଏ ଦେଇ କହିଲେ, ନିକଟରେ କୋଉଠି ହାଟ ବଜାର ଅଛି ଦେଖି ଡାଲି-ଚାଉଳ, ଲୁଣ-ମରିଚ କିଣିଆସିବୁ ଯା । ଆଜି ବାଦଲିଆ ପାଗ ହୋଇଛି, ଖେଚେଡ଼ି କରି ଖାଇବା । ଏହାଶୁଣି ଅବୋଲକରା ଟଙ୍କା ନେଇ ସଉଦା ପାଇଁ ଗଲା ଗୋସେଇଁ ସ୍ନାନ ତର୍ପଣ କରିବାକୁ ଗଲେ ।

ଅବୋଲକରା ସଉଦା ନେଇ ଫେରୁଥିଲାବେଳେ ଦେଖିଲା, ଗୋଟିଏ ଜାଗାରେ ଗୋଟିଏ ବୁଢ଼ାମଣିଷ ମୂର୍ତ୍ତି ତିଆରି ହୋଇ ସେଥିରେ କଳା ଗୋରୁ ଚମଡ଼ା ଢଙ୍କା ହୋଇଛି । ପାଖରେ ଦୁଇଟା ଗୋରଖା ପଟୁଆନ ବସି ଜଗୁଛନ୍ତି । ତାକୁ ଏଟା କ'ଣ ବୋଲି ଅବୋଲକରା ପଚାରିବାରୁ, ପହରାବାଲା କହିଲେ—ଏଟା ଚର୍ମବେଶୀ ମନୁଷ୍ୟ । ବହୁତ ଦିନରୁ କାହିଁକି ଏହାକୁ ରଖି ରଜା ଜଗାଉଛନ୍ତି କେହି ଜାଣେନା । ସେଇଠୁ ଅବୋଲକରା ଆସି ଗୋସେଇଁଙ୍କୁ କହିଲା ଗୋସେଇଁ ! ମୁଁ ଆସିଲାବେଳେ ବାଟରେ ଦେଖିଲି ଗୋଟିଏ ବୁଢ଼ା ମଣିଷର ରୂପ ଗଢ଼ାହୋଇ ସେଥିରେ କଳାଗୋରୁ ଚମଡ଼ା ମଢ଼ାହୋଇ ରଖାଯାଇଛି । ଦୁଇଟା ଗୋରଖା ପହରାବାଲା ତାକୁ ଜଗିଛନ୍ତି । ସେ ବେହିପୋଙ୍କୁ କାରଣ ପଚାରିବାରୁ ମୂର୍ଖ ଗୁଡ଼ାକ କାରଣ ଜାଣୁନା କହିଲେ । ତୁମେ

ଯଦି ସେ ଚର୍ମବେଶୀ ମନୁଷ୍ୟର ରୂପ କଥା ନ କହିବ ତା'ହେଲେମୁଁ ତୁମ ସଙ୍ଗରେ ଆଉ ଯିବ ନାହିଁ । ଏହା ଶୁଣି ଗୋସେଇଁ ହସିଲେ, ଘୃତଖାଇ ଘୃଅ ଚ ପୁଣି ଏକ ଅଣ୍ଡ ଆରେ ପକେଇଲ । ଏହା ସରି କହିଲେ ହଉ କହିବା । ତୁ ଆଗେ ଗାଧୋଇଆସି ଅଣ୍ଡାହୋଇ ବସ୍ । ତା'ପରେ ଖେଚଡ଼ି ପାକ ହେବ, ଗପ କହିବା । ଏହା ଶୁଣି ଅବୋଲକରା ତରତର ହୋଇ ପୋଖରୀରୁ ବୁଡ଼ାଟାଏ ଦେଇ ଆସିବାରୁ ଗୋସେଇଁ କହିଲେ—

ବଗୁ କମ୍ବଳ ଟେକ ମଥା
ଅବୋଲକରାରେ ଶୁଣକଥା ।

ବହୁଦିନ ପୂର୍ବର ଏଦେଶରେ କ୍ଷେତ୍ରପାଳ ବୋଲି ଜଣେ ରଜା ଥିଲେ । ସେ ଯେପରି କ୍ଷମତାବାନ ପ୍ରତାପୀ, ସେହିପରି ଦୟାଶୀଳ ଥିଲେ ମଧ୍ୟ । ତାଙ୍କର ମାତ୍ର ପୁଅ ଓ ସାତଝିଅ ଥିଲେ । ପୁଅ ଝିଅଗୁଡିକ ଦେଖିବାକୁ ଖୁବ୍ ସୁନ୍ଦର । ରଜାଙ୍କର ଶାଗଭଜା ବଡ଼ ପ୍ରିୟଖାଦ୍ୟ ଥିଲା । ସେଥିପାଇଁ ସେ ଜଣେ ପାଣି ବ୍ରାହ୍ମଣ ସଙ୍ଗରେ ଚୁକ୍ତି କରିଥିଲେ । ପାଣିବ୍ରାହ୍ମଣ ନିଜ ବାଡ଼ିରେ ନାନା ଜାତିର ଶାଗ ତିଆରି କରି ତାଙ୍କ ପାଇଁ ନିତି ନୂଆ ନୂଆ ଶାଗ ଯୋଗାଉଥିଲେ । ଏପରି ପ୍ରତିଦିନ ଶାଗ ଯୋଗେଇ ସେ ଭଲ ପଇସା ପାଏ । ଥରେ ତା ଶାଗ ପଟାଳି ଦେଖି ଗୋଟିଏ ଭୂତର ଲୋଭ ହେଲା । ସେଇଦିନ ରାତିକି ସେ ଭୂତଟା ଗୋଟିଏ କାଳିଆ ଷଣ୍ଢ ରୂପ ଧରି ଆସି ପାଣିଙ୍କ ଶାଗବାଡ଼ିରେ ପଶି ଶାଗତକ ସବୁ ଚରିଦେଇଗଲା । ତହିଁଆରଦିନ ସକାଳେ ପାଣି ଯାଇ ଦେଖିଲେ ଶାଗ ତଳରେ ଶାଗନାହିଁ । ସିଏ କୌଣସି ପ୍ରକାରରେ ଏଠୁସେଠୁ କରି କିଛି ଶାଗନେଇ ରଜାଘରେ ଦେଇ ରଜାଙ୍କୁ କହିଲା, ହଜୁର କୁଆଡ଼ୁ ଗୋଟିଏ ଅଦ୍ଭୁତ ଧରଣର କାଳିଆ ଷଣ୍ଢ ଆସି ଶାଗତଳିରୁ ଶାଗତକ ଖାଇଯାଉଛି । ରଜାଙ୍କର ତ ପ୍ରିୟ ଖାଦ୍ୟ

ଶାଗ । ସେ କହିଲେ ଆଜ୍ଞା ହଉ, ସେଠୁ ଗାଁ ଗାଁ ନାଗରା ଦେଇ ଜଣାଇଦେଲେ, ଏଣିକି ରାତିରେ କେହି ଗୋରୁ ଗାଈ ଛାଡ଼ିବେନାହିଁ । ଯାହାଘରେ ଷଣ୍ଢ ଅଛି ସିଏ ତାକୁ ବାନ୍ଧି ରଖିବ । ଏ କଥା ଅନ୍ୟଥା ଯିଏ କରିବ ତାକୁ ଜେଲ ହେବ । ଘୋଷଣା ଶୁଣି ପ୍ରଜାମାନେ ଆଉ ରାତିରେ ଷଣ୍ଢ କି ଗୋରୁ ଛାଡ଼ିଲେ ନାହିଁ । ହେଲେ, ଭୂତ ଷଣ୍ଢକୁ କିଏ କ'ଣ କରିବ ? ସିଏ ପ୍ରତିଦିନ କାଳିଆଷଣ୍ଢ ରୂପ ଧରି ଆସି ଶାଗ ଖାଇଯାଉଚି । ପାଣି ବାଡ଼େଇ ଉଡ଼ବାକୁ ଜଗିଲେ ବି ପାରୁନାହାନ୍ତି । ରାଜାଙ୍କୁ ଏକଥା ଜଣାଇବାରୁ ରାଜା ବଡ଼ ବିସ୍ମୟ ହେଲେ । ତା'ପରେ କହିଲେ, ଆଜ୍ଞା ଯାଅ । ଆଜ ରାତିକୁ ଦେଖାଯିବ । ସତକୁ ସତ ସେଦିନ ରାତି ଅଧବେଳକୁ ରଜା ନିଜେ ଅନ୍ଧାରିବେଜ କରିବାକୁ ଆସି ପାଣିଙ୍କ ଶାଗ ବାଡ଼ି ପାଖରେ ଜଗି ବସିଲେ । ଏହି ସମୟରେ କିଛି ସୋର ଶବ୍ଦ ନାହିଁ, କାଳିଆ ଷଣ୍ଢଟାଏ ବୁଆଡ଼ି ଆସି ଶାଗପଟାଳି ଖାଇବାକୁ ଲାଗିଲା । ରଜା ଦେଖି ତା ପଛ ଧରି ଯେମିତି ଗୋଡ଼େଇଛନ୍ତି ଷଣ୍ଢଟା କିଛି ଦୂର ଯାଇ ଭୂତ ରୂପଧରି ରଜାଙ୍କୁ ଚୋଟି ଚିପି ମାରିଦେଲା । ତା ପରେ ତାଙ୍କ ବେଶ ପୋଷାକ ପିନ୍ଧି, ଗୋଟିଏ ଗାତ ଖୋଳି ରଜାଙ୍କୁ ସେଠି ପୋତିଦେଇ ଆସି ରାଜବାଟୀ ଘରେ ବସି ରହିଲା ।

ରାତି ପାହିବାରୁ ପାତ୍ର ମନ୍ତ୍ରୀମାନେ ଖବର ପାଇ ଦେଖିଲେ, ରଜା ଘରର ଗୋଟାଏ କୋଣକୁ ମଉନ ହୋଇ ବସିଛନ୍ତି । ଯିଏ ଡାକ ଯାହା ପଚାରୁଛି, ଗୋଟିଏ ହେଲେ ଉତ୍ତର ଦେଉ ନାହାନ୍ତି । ଲୋକେ କଥାରେ କହନ୍ତି ଭୂତପରି ବସିଚ କାହିଁକି ? ସେଇଭଳି ହୋଇଚି ରଜାଙ୍କର । ମନ୍ତ୍ରୀ ଡାକହାକ ହାଲିଆହୋଇ ଆସି ରାଜପୁତ୍ର ମାନଙ୍କୁ ଖବରଟା ଜଣାଇଲେ । ରାଜପୁତ୍ରମାନେ ଏକଥା ଶୁଣି ବିସ୍ମୟ ପ୍ରକାଶ କରି ଯାଇ ଭୂତରଜାଙ୍କୁ ବାବା ବାପା କହି ଯେତେ ଡାକିଲେ

ଭୂତରଜା ଶୁଣିଲା ନାହିଁକି ଓଲ୍ଟାଇଲା ନାହିଁ । ତା ପରେ ମନ୍ତ୍ରୀ, ପୁରୋହିତ, ସେନାପତି ଯିଏ ଯେତେ ଡାକିଲେ ରଜା ନ ଶୁଣନ୍ତି । ଶେଷକୁ ରାଣୀ ଆସି ଡାକିବାରୁ କାହାକୁ କିଛି ନ କହି ଧୀରେ ଧୀରେ ଯାଇ ରାଣୀ ନଅରରେ ପହଞ୍ଚିଲା । ରାଣୀ ତାକୁ ଦେଖି ଅବାକ୍ । ସଙ୍ଗେ ସଙ୍ଗେ ଭୂତ ରଜାଟା ରାକ୍ଷସ ରୂପ ହୋଇ ମାରି ଧରି କଲା । ଷଣ୍ଢପରି ହୋଇ ବୁଲିଲା । ଏହିପରି ନାନା ଉପଦ୍ରବ ସୃଷ୍ଟି କଲା । ତା'ର ଏପରି ଅତ୍ୟାଚାର କରିବା ଦେଖି ରାଜାଙ୍କ ସାନପୁଅ, ସାନଝିଅ ଭୟ ଭୀତ ହୋଇ ନଅରରୁ ପଳାଇଗଲେ ।

ପୁଅ ଝିଅ ଦୁହେଁଟି ଦେଖିବାକୁ ଅତି ସୁନ୍ଦର । ପୁଅଝିଅ ଦୁଇଟିଙ୍କ ନାମ ମଧୁ, ମଞ୍ଜରୀ । ମଞ୍ଜରୀ ଯେମିତି ରୂପସୀ ସେମିତି ଚତୁରୀ କନ୍ୟା । ଭାଇ ଭଉଣୀ ଦୁହେଁ ରାଜପୁରୀରୁ ବାହାରି, ଅନେକ ଗାଁ ଗଣ୍ଡା ପାରିହୋଇ ବୁଲୁଛନ୍ତି । ଭାଇ ଭଉଣୀ ଏକ ସଙ୍ଗରେ ଥିବାରୁ ଦୁଃଖ କଷ୍ଟ ବେଶି ବାଧୁ ନଥାଏ । ଏହିପରି ମଧୁ, ମଞ୍ଜରୀ ଅନେକ ଦୂର ଯିବା ପରେ ବାଟରେ ଗୋଟିଏ ଦଉଡ଼ି ପଡ଼ିଥିବାର ଦେଖିଲେ । ମଧୁ ଦଉଡ଼ିଟିକୁ ଡେଇଁବାକୁ ଗଲାବେଳେ ଦଉଡ଼ିଟି ମଣିଷ ପରି କଥା କହିପକାଇଲା । ହେ ରାଜକୁମାର ! ମୋତେ ଡେଇଁ ଯାଇ ଅପମାନ ଦିଅନାହିଁ । ମୁଁ ଗୋଟିଏ କାଳର ଗୋଟିଏ ମାନବୀ ରୂପରେ ଭୁଲିଥିବାରୁ କର୍ତ୍ତବ୍ୟରେ ତ୍ରୁଟି ହେଲା । ତେଣୁ କୁବେର ଶାପରୁ ମୁଁ ଏଠାରେ ଦଉଡ଼ିଟିଏ ହୋଇ ପଡ଼ିଛି । ମୋତେ ତୁମେ ସଙ୍ଗରେ ନେଇଚାଲ । ବାରବର୍ଷ ସାଙ୍ଗରେ ରଖ । ପ୍ରତି ସନ୍ଧ୍ୟାରେ ଧୋଇ ମୋତେ ଗୋଟିଏ ଧୂପ ବତୀ ଦେବ । ଏହାର ପ୍ରତିଫଳ ସ୍ୱରୂପ ଯେତେବେଳେ ତୁମର କୌଣସି ଶତ୍ରୁ ପ୍ରବଳ ହେବେ ମୋତେ କହି ପଠାଇ ଦେଲେ ମୁଁ ତାକୁ ବାନ୍ଧି ଆଣିବି । ଏହାଶୁଣି ରାଜପୁଅ ଖୁସି ହୋଇ ଦଉଡ଼ି ଖଣ୍ଡକୁ ଉଠାଇ ନେଲା ।

ପୁଣି କିଛି ଦୂର ପଥ ଓ ମଞ୍ଜରୀ ଯାଇଛନ୍ତି, ଦେଖିଲେ ଦୁଇହାତ ଲମ୍ବାର ଗୋଟାଏ ଚମ୍ପାବାଡ଼ ପଡ଼ିଛି । ମଝିରେ ସରୁ ନଳଟାଏ ଏ ପାଖରୁ ସେପାଖ ଯାଏ ଦେଖାଯାଉଛି । ତା ପାଖରେ ପହଞ୍ଚିବାରୁ ପିଏ କହିଲା, ରାଜକୁମାରି ! କୁବେରର ଅଭିଶପ୍ତ ପୁରୁଷକୁ ଉଦ୍ଧାର କରିବାକୁ ନଜତ, ମୁଁ ନାଗୁଟିଏ ତାଙ୍କୁ ବର ଏହି ନଳିରୂପ ଧରି ପଡ଼ିଛି । ମୋତେ ନେଇଚାଲ, ମକାକେ ଥରେ ମୋତେ ପାଣିରେ ଧୋଇ ସେଇ ଦଳଡ଼ରେ ଗୁଡ଼େଇ ରଖିବେ । ଦରକାର ବେଳେ କୌଣସି ଶତ୍ରୁ ଭୂମିର ପହଞ୍ଚିଲେ ତାଙ୍କ ନାଁ କହି ମୋତେ ପଠାଇ ଦେବ । ମୁଁ ତାଙ୍କୁ ଅଣ୍ଡା କରିଦେବି । ଏ କଥା ଶୁଣି ତାକୁ ମଧ ଉଠାଇ ନେଇଗଲେ । ଏହିପରି ଦୁଇଟି ଦୁର୍ଲ୍ଲଭ ପଦାର୍ଥ ପାଇ ଭାଇ ଭଉଣୀ ଦୁହେଁ ଆଗେଇଲେ ।

ଅନେକ ଦେଶ ନଗର ପାଟଣା ପାରେଇ
ଚଳନ୍ତି ମଧୁ ମଞ୍ଜରୀ ନଳ ଡୋରି ନେଇ ।
ଯାଉଁ ଯାଉଁ ଦେଶେ କେତେ ଚଢ଼ିଗଲ ସରସୀ
ଦେଖନ୍ତେ ମନୋହର ଚୋଟା ପଶୁ ପକ୍ଷୀ ରାଶି ।
ଆଖିକୁ ନବୀନ ବନ ବୃକ୍ଷଲତା ଘନ
ସୁମଧୁର ଭସୁଙ୍କର ପକ୍ଷୁପକ୍ଷୀ ସ୍ୱନ ।
ତା ମଧ୍ୟେ ରାଜକୁମାରୀ ଚଳନ୍ତି
ଧ୍ୱନି ଜାତ ପ୍ରତିଧ୍ୱନି ଶୁଣି ଚମକନ୍ତି ।
ଘୋର ଅନ୍ଧକାର ପଥ ନ ଦିଶଇ କିଛି
ଦେଖିଲେ ବୃଦ୍ଧ ରାକ୍ଷସ ଏକ ଆସୁଅଛି ।
ତାଳଗଛ ପରି ଦିଶେ ଜଳେ ତା ନୟନ
ତାକୁ ଦେଖି ହେଲେ କେନି ଜନ ଖିନ୍ନମନ ।
ଏଣୁ କାଳେ ବୃଦ୍ଧ ରାକ୍ଷସ ନରଦେହ ଧରି
ବୋଇଲେ ନ ଡର ରାଜ କୁମାର କୁମାରୀ ।

ତୁମେମାନେ ମୋତେ ଟିକେମାତ୍ର ଠାବ ଦିଅ
ମାଛି ରୂପେ ବସି ଯିବ ସଙ୍ଗତରେ ନିଅ ।
ବଦଳେ କରିବ ମୁହିଁ ବଡ ଉପକାର
ଏ ଆଶ୍ବାସେ ନେବା ମଧୁ କଲା ଅଙ୍ଗୀକାର ।
ମାଛିରୂପେ ଦୁଷ୍ଟ ଦୈତ୍ୟ ବସିଲା ତା ଦେହେ
ବନ ଅତିକ୍ରମି ଗଲେ ଭ୍ରାତା ଭଗ୍ନୀ ଦୁହେଁ ।
ବନ ଶେଷେ ଦିଶେ ଏକ ମଙ୍ଗଳା ଦେଉଳ
ରମଣୀୟ ଛୋଟା ସର ମନୋମୟ ଜଳ ।
ତା ଦେଖି ବଳିଲା ଲୋଭ—କୁମାର କୁମାରୀ
ସେଠାରେ ରହିଲେ ଧବ ମଙ୍ଗଳା ସୁମରି ।

ପାଖରେ ଗୋଟିଏ ଧର୍ମଶାଳାରେ ଭାଇଭଉଣୀ ଦିହେଁ ସୁଖରେ ରହିଥାନ୍ତି । ମଧୁ ନିତି ବଣକୁ ଯାଇ ଶିକାର କରି ମାଂସ ଆଣେ । ମଞ୍ଜରୀ ଫୁଲହାର ଗୁନ୍ଥି ଦେବୀଙ୍କି ଦିଏ । ମାଂସ ବିକି ଚାଉଳ ମସଲା କିଣି ମାଂସ ରାନ୍ଧି ଖାଇ ବେଶ୍ ହସ ଖୁସିରେ ଦିନ କାଟନ୍ତି ।

ସେମାନେ ଯେଉଁ ରାଜ୍ୟରେ ରହିଛନ୍ତି ତାର ନାମ ସୁବର୍ଣ୍ଣପୁର ସେ ଦେଶର ଯୁବରାଜଙ୍କ ନାମ ବିକ୍ରମ କେଶରୀ । ଦିନେ ବିକ୍ରମ କେଶରୀ ପାରିଧି କରିବାକୁ ଗଲାବେଳେ ଦେବୀ ମନ୍ଦିର ପାଖରେ ଦେଖିଲେ ଗୋଟିଏ ପରମ ସୁନ୍ଦରୀ ଷୋଡ଼ଶୀ କନ୍ୟା ଫୁଲମାଳ ଧରି ମଙ୍ଗଳାଙ୍କ ମନ୍ଦିରକୁ ଯାଉଛି । ଯୁବରାଜଙ୍କର ପ୍ରଥମ ଦେଖାରେ ମଞ୍ଜରୀର ରୂପଲାବଣ୍ୟ ଓ ଯୌବନ ଉପରେ ମନ ଲାଗିଗଲା । ତୁଳସୀ ଦାସ କହିଛନ୍ତି—

"ଯଥିଲା ରଣମେ ମନ୍ ଲଗଓ ହାର
ଅଜାନା ଜନାନାକୁ ମନ୍ ବୋଲ୍ ବାତ ।"

ସେହି କଥାକୁ ଭାବ ସେ ମଞ୍ଜରୀକୁ କିଛି ନ କହି ଘରକୁ ଲେଉଟି ଗଲେ । ହେଲେ, ରାତିରେ ତାଙ୍କୁ ନିଦ ହେଲାନାହିଁ । କନ୍ୟା

ରୂପଗୁଣ୍ମା ତାଙ୍କ ମାନସ୍ପଟରେ ସବୁବେଳେ ନାଚୁଥିଲା । ସେଇଥି ପାଇଁ ସେ ଦୂଷ ପଠାଇ ବୁଝିଲେ, ମଞ୍ଜୁଶ୍ରୀ ଇତର ଲୋକର ଝିଅ ନୁହେଁ । ରାଜକନ୍ୟା ସେ । ସେଇଠି ଯୁବରାଜ ଦୂତଦ୍ୱାରା ନଜେ ଯାଇ କନ୍ୟା ପାଖରେ ବିବାହ ପ୍ରସ୍ତାବ ପକାଇଲେ । ମଞ୍ଜୁଶ୍ରୀ କହିଲା,ବିଭା ହେବାକୁ ମୁଁ ତ ମନା କରୁନାହିଁ । ହେଲେ ଜବାବ ଦେଇପାରୁନାହିଁ, ମୋର ଭାଇ ଅଛନ୍ତି । ସେ ସାର ପୁରୁଷ । ଇଚ୍ଛାକଲେ ପଣ୍ଡାଳରେ ତୁମ ରାଜ୍ୟ ସମ୍ପତ୍ତି ନେଇପାରନ୍ତି । ତାଙ୍କ ଅଜଣାରେ ମୁଁ ତୁମକୁ କିଛି କହିବ ନାହିଁ । ଆଉ ତାଙ୍କୁ ନ ଜଣାଇ ତୁମେ ଏଠାକୁ ଆସିବ ନାହିଁ । ଏପରି କଠୋର କଥା କହିବାରୁ ବିକ୍ରମକେଶରୀ ସେଠୁ ଲେଉଟିଲେ ସତ, ହେଲେ ଦୂତ ହାତରେ ଏପରି ବଶିକରଣ ଔଷଧ ମଞ୍ଜୁଶ୍ରୀକୁ ଖୁଆଇ ଦେଇ ଯେ ମଞ୍ଜୁଶ୍ରୀ ଏକବାରେ ଭାଇମମତା ଭୁଲିଗଲା

ଦିନେ ବିକ୍ରମକେଶରୀ ମଞ୍ଜୁଶ୍ରୀକୁ ନେଇ ବସିଥିଲାବେଳେ କହିଲେ-ଦେଖ, ତୁମ ଭାଇ ରହିଥିଲେ ଆମର ବିବାହ ହୋଇ ପାରିବ ନାହିଁ । ମୁଁ ଗୋଟିଏ କଥା କହିବି, ଯଦି ସେତକ ତାଙ୍କୁ ଦେଇ-ପାରିବ ତାହାହେଲେ ତାଙ୍କର ମନ ବଦଳିଯିବ । ସିଏ ବଳେ ରାଜିହୋଇ ମୋ ସାଙ୍ଗରେ ତୁମକୁ ବାହାଦେବେ । ମଞ୍ଜୁଶ୍ରୀ ତ ଷୋଡ଼ଶୀ ଯୁବତୀ । ଅବିବା ସେମିତି କେତେକ ଝିଅ ବାପ ମା'ଙ୍କ କଥା କାଟି ଦେଇ ଜାତି ଅଜାତି ନମାନି ବର ପାଇବାକୁ ପାଗଳପରି ଛୁଟିଛନ୍ତି, ସେମିତି ସେ ବିଚୂଳିଆ କଥାରେ ରାଜିହେଲା । ପଣ୍ଡିତ କହିଛନ୍ତି—'ବିଶ୍ୱାସେନ୍ନୈ ନ କର୍ତ୍ତବ୍ୟଂ ସ୍ତ୍ରୀଷୁ ରାଜକୁଳେଷୁ ଚ' ରାଜକୁଳର ବା ରାଜାପ୍ରତିନିଧି ଲୋକଙ୍କୁ ଓ ସ୍ତ୍ରୀ ଜାତିକୁ ପୂରା ବିଶ୍ୱାସ କରିବ ନାହିଁ । ମଞ୍ଜୁଶ୍ରୀ ରାଜି ହେବାରୁ ବିକ୍ରମକେଶରୀ ତାକୁ କହିଲେ-କାଲି ମଧୁସ୍ତଭ ତୁମର ଶିକାର କରି ଆସିଲେ ତାଙ୍କୁ କହିବ ଏଇ ପୋଖରୀର ଦକ୍ଷିଣ ପାଖରେ ଯେଉଁ ତେନ୍ତୁଳିଗଛ ଅଛି

ସେଥିରୁ କିଛି ତେନ୍ତୁଳି ନୋଳ ଆଣିବାକୁ । ସେ ଗଛକୁ ଉଠି ତେନ୍ତୁଳି ତୋଳିଲେ ତାଙ୍କ ମନ ଭୁଲିଯିବ । ତମପାଇଁ ବର ଖୋଜିବେ । ମୋ ସଙ୍ଗରେ ଯୋଗାଯୋଗ କରି ତୁମକୁ ବାହାଦେବେ ଏ କଥାରେ ମଞ୍ଜରୀ ରାଜି ହେବାରୁ ଯୁବରାଜ ଲେଉଟିଗଲେ ।

ସେଦିନ ମଧୁ ଗୋଟିଏ ମୃଗମାଂସ ଆଣି ଦେଇଥିବାରୁ ମଞ୍ଜରୀ କହିଲା, ଭାଇ ! ହରିଣୀ ମାଂସ ମାଟିଆ ଲାଗେ । ତେଣୁ ତୁମେ ପୋଖରୀର ଦକ୍ଷିଣପାଖ ଜଙ୍ଗଲରୁ ମୁଠାଏ ତେନ୍ତୁଳି ଛିଣ୍ଡାଇ ଆଣ, ମାଂସରେ ଦି'ଖଣ୍ଡ ପକାଇଦେଲେ ଭଲ ଲାଗିବ । ମଧୁ ତା କଥାରେ ରାଜିହୋଇ ଯାଇ ଯେମିତି ତେନ୍ତୁଳି ଗଛକୁ ଉଠିଛି ସେ ଗଛରେ ଗୋଟାଏ ଭୂତ ଥିଲା । ସେ ଆସି ମଧୁର ଟୋଟିକୁ ଚିପି ଧରିଲା । ମଣିଷର ଟୋଟି ଚିପି ଧରିଲେ ଆଉ କଣ ହାତଗୋଡ଼ ପାଟି ଫିଟେ ସେ ନିରୁପାୟ ଦେଖି ସେଇ ବ୍ରହ୍ମଦୈତ୍ୟଙ୍କୁ ମନେ ମନେ ସ୍ମରଣ କରିବାରୁ, ବ୍ରହ୍ମରାକ୍ଷସ ଆସି ଭୂତଟାକୁ ମାଡ଼ିବସିଲା । ଭୂତଟା ମଧୁକୁ ଛାଡ଼ି ବ୍ରହ୍ମରାକ୍ଷସ ସଙ୍ଗରେ ଲଢ଼େଇ କରିବାରୁ ଦୁହେଁ ଗଡ଼ାଗଡ଼ି ହୋଇ ଗଛରୁ ଗଡ଼ିପଡ଼ିଲେ । ଭୂତଟାର ସିନା ବଳ ବେଶି ହେଲେ ବ୍ରହ୍ମରାକ୍ଷସ ତ କୌଶଳୀ । ଏପରି କାଇଦାରେ ଭୂତ ନାକରେ ଗୋଟାଏ ହାତ ଚିପିରଖି ତା ତଳପେଟରେ ଗୋଇଠା ଥୋଇ-ଦେଲା ଯେ ଭୂତଟା ମରିଗଲି ମରିଗଲି ଆଲୋ ବାପାଲୋ, କହି ଏକ ବାର ଗଛମୂଳରେ ପଡ଼ିଲା ଦୁମକିନା । ସେତିକିବେଳେ ସେ ଯମପୁରକୁ ଚାଲିଯିବାରୁ ବ୍ରହ୍ମଦୈତ୍ୟ ମାଛିରୂପ ଧରି ପଳାଇଗଲା । ମଧୁ ତେନ୍ତୁଳି ଆଣି ମଞ୍ଜରୀକୁ ଦେଇ ଗାଧୋଇବାକୁ ଗଲା ।

ଏଣେ ତେନ୍ତୁଳି ମୂଳରେ ଭୂତଟା ମରି ପଡ଼ିବାରୁ ବଡ଼ ଗୋଟାଏ ଆବାଜ ହେଲା । ବହୁତ ଲୋକ ଦେଖିଯାଇ ରାଜାଘରେ ଖବର ଦେଲେ । ଭୂତ ମରିବା ବାରତା ପାଇ ଆଗେ ଡମ୍ବକେଶରୀ

ଘୋଡ଼ାରେ ଚଢ଼ି ଆସି ଦେଖିଲେ ମଉରେ ଭୂତଟା ପାହାଡ଼ଉପର ମର ପଡ଼ିଛି । ସେଇଠୁ ତା ମନରେ ଏକଣ୍ଠ ସନ୍ଦେହ ମଞ୍ଜରୀ କଥା । ମଧୁ ନଷ୍ଟପ୍ରାୟ ଥାଇ ସୁନ୍ଦର । ସେ ଭୂତଟାକୁ ସେଠାରେ ପୋତିଆଇ ଦେଇ ମଧୁ ନଥିବା ବେଳେ ଯାଇ ମଞ୍ଜରୀକୁ ଭେଟିଲେ । ମଞ୍ଜରୀତ ଯୁବକ ଦେହର ପରଶ ପାଇ ଭୁଲିଲାଣି । ସେ କହିଲେ ତୁମେତ କହୁଥିଲ ଭାଇ । ତେନ୍ତୁଳି ଗଛକୁ ଉଠିଲେ ମନ ବଦଳିଯିବ ବୋଲି, କାହିଁ କହୁଛ ଦେଖୁନାହିଁ ? ବସନ୍ତ କହିଲେ, ମେ ଗଛଟାରେ ଭୂତ ରହିବାରୁ ମହିମା ବଦଳିଯାଇଛି, ସେଥିପାଇଁ ହେଲା ନାହିଁ । ତୁମକୁ ଆଜ ଗୋଟିଏ ଉପାୟ ବତାଉଚି, ଯେଉଁ କାର୍ଯ୍ୟରେ ନଶ୍ଚେ ମନ ଭୁଲିଯିବ । ମଞ୍ଜରୀ ପଚାରିଲେ କ'ଣ କରିବ ? ବସନ୍ତ କହିଲେ ତାଙ୍କୁ କାଲି କୁହ ସେ ଏଇ ପଦ୍ମପୋଖରୀରୁ ଶହେ ଆଠୋଟି ପଦ୍ମଫୁଲ ତୋଳି ଆଣନ୍ତୁ । ସେଇଥିରେ ମାଳ ଗୁନ୍ଥି ତୁମେ ମଙ୍ଗଳାଙ୍କୁ ଦିଅ । ତାହା କଲେ ସବୁ ଠିକ୍ ହୋଇଯିବ । ଏହାକହି ସେ ମଞ୍ଜରୀ ଓଠରେ ଚୁମାଟିଏ ଦେଇ ଚାଲିଗଲେ । ଷୋଡ଼ଶୀ ମଞ୍ଜରୀ ତାଙ୍କୁ ଭୁଲିତା ନପାଇ ରହୁଥାଏ ।

ଗଲାବେଳେ ବସନ୍ତ କପରି ମଞ୍ଜରୀକୁ ଶୀଘ୍ର ପାଇବ, ସେଇ ଚିନ୍ତା କରୁଥାଏ । କାରଣ ମଞ୍ଜରୀର ରୂପରେ ତାକୁ ଅନ୍ଧକାର ବଷପରି ବୋଧ ହେଉଛି । ଶାସ୍ତ୍ର କହିଚି—

"ସତି ପ୍ରଦୀପେ ସତ୍ୟଗ୍ନୌ ସତ୍ସୁ ତାରାମଣୀନ୍ଦୁଷୁ,
ବିନା ମେ ମୃଗଶାବାକ୍ଷୀ ତମୋଭୂତଂ ମିଦଂ ଜଗତ୍ ।"

କାମୁକମାନେ ଘରର ଆଲୋକ, ତାରା, ରତ୍ନରଜ୍ୟୋତି ଓ ଚନ୍ଦ୍ରର ଜ୍ୟୋତ୍ସ୍ନା ଥିଲେ ମଧ ମୃଗ ଶିଶୁନେତ୍ରା ପ୍ରେୟସୀ ଭିନ୍ନ ଜଗତକୁ ଅନ୍ଧାର ଦେଖନ୍ତି । ସେଦିନରୁ ରାତି ହୋଇଯିବାରୁ ମଧୁ ଶିକାରକରି ଲେଉଟିଲେ, ରାତିରେ ମଧୁ ମଞ୍ଜରୀ ଦହେଁ ଖିଆପିଆକରି ଶୋଇଲେ । ତହିଁ ଆରଦିନ ସକାଳେ ମଞ୍ଜରୀ ମଧୁକୁ କହିଲେ, ଭାଇ ! ଆଜି ଏଇ

ପୋଖରୀରୁ ଶହେ ଆଠଟା ପଦ୍ମ ତୋଳି ଆଣି ମୋତେ ଦିଅ । ମୁଁ ମାଳା ଗୁନ୍ଥି ମଙ୍ଗଳାଙ୍କୁ ଦେବି । ଏହା ଶୁଣି ମଧୁ ତତ୍‌କ୍ଷଣାତ୍ ଯାଇ ପଦ୍ମପୋଖରୀରେ ପଶିଗଲା ।

"ସେ ଜଳ ମଧ୍ୟେ ନକ୍ର ଥିଲା । କୁମ୍ଭୀର ପଶନ୍ତେ ଧରିଲା ।
ଜଳେ ଟାଣନ୍ତେ ବଳେ ଧରି । କୁମ୍ଭୀର ଟାଣେ ବୁଡ଼ିପାରି ।
ଦଉଡ଼ି ନଳକୁ କୁମ୍ଭାର । ସବନ୍ତେ ମିଳଲେ ପାଶର ।
ଦଉଡ଼ି ବାନ୍ଧିଲା ସଯୋରେ । ଗୁନ୍ଦଏ ଦେଲା ତାରପରେ ।
ଗୁନ୍ଦକେ ମଲା ନକ୍ର ପ୍ରାଣୀ । ଦଉଡ଼ି ନେଲା ଉର୍ଦ୍ଧ୍ୱେ ଟାଣି ।"

ଦଉଡ଼ି କୁମ୍ଭୀରଟାକୁ ଆଣି ଉପରେ ପକାଇ ନଳ ସହିତ ଅଦୃଶ୍ୟ ହୋଇଗଲା । ମଧୁ ବାଛି ବାଛି ଶହେ ଆଠ ପଦ୍ମ ତୋଳିଆଣି ମଞ୍ଜରୀକୁ ଦେବାରୁ ସେ ମାଳ ଗୁନ୍ଥି ମଙ୍ଗଳାକୁ ଦେଇ ପୂଜା କରି ବର ମାଗିଲା ବସନ୍ତକୁ ।

ତର୍ଦ୍ଧିଉରୁ ଯେମିତି ମଧୁ ବଣକୁ ବାହାରିଗଲା, ବସନ୍ତ ଆସି ଦେଖିଲା ସେ ବଡ଼ଟ କୁମ୍ଭୀରଟାକୁ ବି ମଧୁ ମାରି ଥୋଇଛି । ସେଇଠୁ ସେ ଭାବିଲା ଯେତେ କୂଟ କଲେ ଟୋକାଟାକୁ ମାରିବା ପାଇଁ, କୌଣସି ପ୍ରକାରେ ତ ମଲା ନାହିଁ । ବର୍ତ୍ତମାନ ଉପାୟ ? ଏହାପରେ ଭାବି ଯାଇ ମଞ୍ଜରୀ ପାଖରେ ପହଞ୍ଚି କହିଲା, ପ୍ରିୟତମେ ! ତୁମ ଭାଇଙ୍କ ମନ ତରଳାଇବାକୁ ହେଲେ ବହୁତ ଦିନ ଲାଗିଯିବ । ସେତେବେଳକୁ ହୁଏତ ତୁମେ ମୁଁ ବୁଢ଼ା ବୁଢ଼ୀ ହୋଇଯିବା । ତେଣୁ ମୁଁ କହୁଛି ତୁମେ ମୋ ସାଙ୍ଗରେ ଚାଲ । ଏପରି ଗୋଟିଏ ଜାଗାକୁ ପଳାଇଯିବା, ଯେଉଁ ଜାଗାର ଖବର ତୁମ ଭାଇ ପାଇବେ ନାହିଁ । ମଞ୍ଜରୀ କହିଲା, ରାଜ୍ୟ ଧନ ଛାଡ଼ି ମୋତେ ନେଇ କ'ଣ ଦୁଃଖ ଦିବ ? ବସନ୍ତ କହିଲା, ତୁମ ପାଖରେ ମୋର ସବୁ ସୁଖ ସମ୍ପଦ ଅଛି । ତୁମେ ତ—

ମୁଖେନ ଚନ୍ଦ୍ର କାନ୍ତେନ ମହାନୀଳୈ ଶିରୋରୁହୈଃ
କରାଭ୍ୟାଂ ପଦ୍ମରାଗାଭ୍ୟା ରେଜେ ରତ୍ନମୟୀବସା" ।

"ଶଚୀହାସା ତୋର ମୁଖେ ଚନ୍ଦ୍ରକାନ୍ତ ମଣି ଝଟକି ଅଛି ରହି
ଘନ-ଇନ୍ଦ୍ର-ନୀଳମଣି ଜ୍ୟୋତିକୁ ତୁ କବରୀରେ ଅଛୁ ବହି ।
କରତଳେ ତୋର ପଦ୍ମରାଗମଣି ବରଣ ପାଉଛି ଦେଖି
ରମଣୀର ମଣି ମଣିଛୁ ତୋତେ ମୁଁ ମଣିମୟୀ ସ୍ମିତମୁଖୀ ।"

ପରି ବସନ୍ତ ମିଷ୍ଟବାଣୀରେ ମଞ୍ଜରୀ ଭୁଲିଗଲା । ତା ଛଡ଼ା—

"ଘୃତକୁମ୍ଭସମାନାରୀ ତପ୍ତାଙ୍ଗାର ସମଃ ପୁମାନ ।" ବୋଲି ଚାଣକ୍ୟ କହିଛନ୍ତି । ଅଗ୍ନି ପାଖରେ ଘିଅପରି ମଞ୍ଜରୀ ବସନ୍ତମିଷ୍ଟ-ବାଣୀରେ ଭୁଲି ଶୀଳକୁ ଛାଡ଼ି ଚାଲି ଯିବାକୁ ରାଜିହେଲା ।

"ନଥିବ ସମସ୍ତ ସ୍ଥାନ ଥିବ ନାହିଁ ପ୍ରାର୍ଥୀ
ନ ଥିଲେ ଯୌବନ ଆଉ ତେବେ ନାରୀ ସତୀ ।"

ବୋଲି ତ ଆମର ପ୍ରବାଦ ଅଛି । ଏଠାରେ ମଞ୍ଜରୀ ସେଗୁଡ଼ିକର ସବୁ ସୁବିଧା ପାଇବାରୁ ବସନ୍ତକେଶରୀ ସଙ୍ଗରେ ପଳେଇଲା । ବସନ୍ତ ତାକୁ ଗନ୍ଧର୍ବ ମତରେ ବାହାହୋଇ ନେଇ ଅନ୍ତଃପୁରରେ ରଖିଦେଲା । ତେଣେ ମଧୁ ଶିକାର କରି ଆସି ମଞ୍ଜରୀ ମଞ୍ଜରୀ ଡାକିଲେ ପାଇବ କାହୁଁ ? ମଞ୍ଜରୀ ତ 'ଛୁ' ତଳେ ଫର୍ସଉଡ଼ାଇ ଦେଇଛି ।

ମଞ୍ଜରୀକୁ ଡାକି ଖୋଜି ନ ପାଇ ମଧୁ ବୃଦ୍ଧଦୈବଜ୍ଞଙ୍କୁ ପଚାରିଲା, ମଞ୍ଜରୀ କୁଆଡ଼େ ଗଲା ଜାଣ ? ବୃଦ୍ଧ ରାକ୍ଷସ ମଞ୍ଜରୀ ଓ ବସନ୍ତ କେଶରୀର ଭାବ, ବିବାହ ମିଳନ କଥା ମୂଳରୁ ଶେଷଯାଏ ସବୁ କହିବାରୁ ମଧୁ ପଚାରିଲା—ମଞ୍ଜରୀ ଯୁବତୀ ହୋଇ ଯଦି ନିଜ ଇଚ୍ଛାରେ ବର ବରି ସୁଖରେ ରହିବାକୁ ଯାଇଛି ତେବେ ତାଁ

ସମ୍ବନ୍ଧରେ ଆଉ କେଶୀ ଖବର ନେବା ଠିକ୍ ନୁହେଁ । ଯିବା ଦିଅ, ଯାଉଚ ଯାଉ ପଛକୁ ଭଲ ମନ୍ଦ ଦୋଷ ଦେଖିବାକୁ ନ ଥିବ । ଏହା ଶୁଣି ମଧୁ ବ୍ରହ୍ମରାକ୍ଷସଙ୍କୁ କହିଲା, ମୋ ପାଇଁ ଗୋଟିଏ ବୁଢ଼ା ଚମଡ଼ାର ପୋଷାକ କରେଇ ଦେଇ ପାରିବ ? ରାକ୍ଷସ କହିଲା, ଗୋଟାଏ କ'ଣ ଛନ୍ଦ ଛନ୍ଦ କହିଦେଇପାରେ । ଯା କହି ସେ ଯାଇ ଦେଖିଲେ ଗୋଟିଏ ହଇଜା ରୋଗୀ ବୁଢ଼ାକୁ ମଶାଣିରେ ପକେଇ ଦେଇ ଯାଇଛନ୍ତି । ତା ଚମଡ଼ାକୁ ଉତାରି ଆଣି ଲୁଣ ଫିଟିକିରିରେ ଧୋଇଦେଇ ଆଣି ମଧୁ କୁମ୍ଭାରକୁ ଦେଲା । ମଧୁ ସେଇଟାକୁ ନେଇ ନିଜ ଦେହରେ ଗଳେଇ ହୋଇ ଗଲା, ଦାଉଡ଼ି ଓ ବ୍ରହ୍ମଦୈତ୍ୟକୁ ନେଇ ସେଠାରୁ ଦକ୍ଷିଣ ଦିଗକୁ ଚାଲିଲା ।

ମଧୁ କେତେଦିନ ଚାଲିବା ପରେ ଯାଇ ମଙ୍ଗଳ ରାଜ୍ୟରେ ପହଞ୍ଚିଲା । ସେଠାକୁ ଯାଇ ଦେଖିଲା ଗୋଟିଏ କମାରବୁଢ଼ା ଶାଳରେ ବସି କଟୁରି ଧାର ଦେଉଛି । ସେଇଠି ବୃଦ୍ଧଚର୍ମବେଶୀ ମଧୁ ପହଞ୍ଚି କହିଲା, ବନ୍ଧୁଣିଏ ! ମୁଁ ବିଦେଶୀ ବୁଢ଼ାଲୋକ, ତୀର୍ଥକରିବାକୁ ବାହାରିଛି । ମୋତେ କେତେ ଦିନ ପାଇଁ ତୁମ ଶାଳ ପଲରେ ରହିବାକୁ ଟିକିଏ ଜାଗା ଦିଅ । ମୁଁ ମାଗିଯାଚି ଆଣି ଖାଇବି । ରାତିକି ବସି ଦୁଇ ବୁଢ଼ା ଦୁଃଖ ସୁଖ ହବା । ବୁଢ଼ା ହଉ ବୋଲି କହିବାରୁ ମଧୁ ସେଇଠାରେ ରହେ । ରାତି ହେଲେ ଦୁଇବୁଢ଼ା ବସି ଅଗ୍ନି ଜଳେଇକି ଦୁଃଖସୁଖ ଗପ କରନ୍ତି । ଏମିତି କେତେ ଦିନ ଗଡ଼ିଗଲେ, ଦଇବ ଯୋଗକୁ ମଙ୍ଗଳ ରାଜ୍ୟ ରଜା ସୁରସିଂହଙ୍କ ଘରେ ବେଶ୍ ଗୋଟିଏ ଦରବାର ଆରମ୍ଭ ହେଲା । ରଜାଙ୍କର ସାତଝିଅ ପାଞ୍ଚ ପୁଅ । ଦିନେ ସଞ୍ଜବେଳେ ରଜା ବସି ସମସ୍ତଙ୍କୁ ଡାକି ପଚାରିଲେ, ତୁମେ ସବୁ କାହା ଭାଗ୍ୟରେ ଚଳୁଛ ? ସାନଝିଅ ଜଣକୁ ଛାଡ଼ି ସମସ୍ତେ କହିଲେ ଆମେ ତୁମ ଭାଗ୍ୟରେ ଚଳୁଅଛୁ । ଜଣକ କହିଲା ମୁଁ ମୋ ଭାଗ୍ୟ ବଳରେ ଚଳୁଅଛି । ଯାହା ଭାଗ୍ୟରେ ଅଛି ତାହା

ଯାଉଛ । ମୋ ଧର୍ମ କର୍ମର ଫଳ ଭୋଗୁଛି ମୁଁ । ମରେ କଏ କାହିଁକି ଚଳେଇନବ । ବଡ଼ ଝିଅମାନେ ସବୁ ରଜା ଘରରେ ଚଳୁଛନ୍ତି କହିଲେ । ସବା ସାନ ଦକଟେ ବୋଲି ଝିଅ ନଳମା, ତା'ର ପୁଣି ଏତେ ଦମାକ । ରଜା ରାଗି ଏକବାରେ ନିଆଁ ବାଣ ହେଲେ । ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କ ଡାକି କହିଲେ, ମନ୍ତ୍ରୀ । କାଲି ଭିତରେ ଯେଉଁଠେ, ଯେଉଁ ଜାତିରୁ ପାରିବ ଗୋଟିଏ ଅଶୀ ବର୍ଷର ବୁଢ଼ାକୁ ଖୋଜି ଆଣ । ମୁଁ ନଳମାକୁ ତା ସଙ୍ଗରେ ବାହା ଦେଇ ଘରୁ ତଡ଼ିଦେବି । ଏ କଥାରେ ମନ୍ତ୍ରୀ ଅବାକ୍ ହେଲେ । ନଳମା ସାନଝିଅ, ସବୁଠାରୁ ସୁନ୍ଦର, ଅଳିଅଳୀ ! ହଠାତ୍ କାହିଁକି ଏପରି ଅବିଚାର କରୁଛନ୍ତି କହିବାରୁ, ରଜା କ୍ରୋଧକରି କହିଲେ—ସେ କଥା ନ କହି ଯାହା କହିଲି ତାହା କର ।

ମନ୍ତ୍ରୀ ଭାବିଲେ 'ରାଜଦତ୍ତ ଭୂମି' 'ପିତୃଦତ୍ତ କନ୍ୟା' ବୋଲି କଥା ଅଛି 'ରଜା ଗୋଳା ବୁଝି ଅବୁଝା, ଯାହା ବୁଝିଲ ସେଇଟା ମଜା' ହଉ କଣ କରିବା ଆଉ ? ଏହା ଭାବି ଚଢ଼ିଆରବାନ ବହୁତ ଜାଗା ବୁଲିଖୋଜି ନ ପାଇ ଲେଉଟିଲାବେଳେ ଦେଖିଲେ ସେ କମାରଶାଳ ଦୁଆର ମୁହଁରେ ବୁଢ଼ାଟିଏ ବସି ଆଖି ମିଟିମିଟି କରି ଅନାଉଛି । ତାକୁ ଦେଖି ମନ୍ତ୍ରୀ ଖୁସି ହେଲେ । ପାଖକୁ ଯାଇ ଦେଖିଲେ ବୟସ ନବେ ଯାଏ ହେବ । ଚମସାର ଲୋଳକୁଞ୍ଚ, କେଶଗୁଡ଼ିକ ଧୋଫ ପାଚି ଧଳା । ବାଡ଼ି ଧରି ଉଠୁଛି । ଚାଲୁଛି !

ମନ୍ତ୍ରୀ ଦେଖିଲେ—

'ଗାତ୍ର ସଙ୍କୁଚିତଂ ଗତିର୍ବିଗଳିତା ଭ୍ରଷ୍ଟାଚ ଦନ୍ତାବଳି
ଦୃଷ୍ଟିର୍ନଶ୍ୟତି ବର୍ଦ୍ଧତେ ବଧିରତା ବକ୍ତ୍ରଂଚ ଲାଳାୟତେ ।'

ବୁଢ଼ାର ଦେହ ବାଙ୍କି ଖଙ୍ଗ ହେଲାଣି, ଚର୍ମ କୁଞ୍ଚିତ ହେଲାଣି, ଦାନ୍ତ ନାହିଁ, ଆଖିକି ଦିଶୁନାହିଁ, କାନକୁ ଶୁଭୁନାହିଁ, ମୁହଁପାକ ଲାଳ

ସରସର । ଏହି ବୁଢ଼ାକୁ କିପରି ଲାବଣ୍ୟମୟୀ କୋମଳ କନ୍ୟାକୁ ରାଜା ବାହାଦେବେ । ଏ ଦୁର୍ବୁଦ୍ଧି ତାଙ୍କୁ କିଏ ଦେଲା ? ଏହିପରି ଲୋକ ଶେଷରେ ବୁଢାକୁ କହିଲେ, ବୁଢ଼ା ! ତୁମକୁ ରାଜା ଡାକୁଛନ୍ତି ଚାଲ । ବୁଢା ଆଉ କିଛି ବାଡିଭର ଦେଇ ଉଠିବାରୁ ମନ୍ତ୍ରୀ ସୁଆସରେ ବସାଇ ବୁଢ଼ାକୁ ନେଇ ରାଜା ପାଖରେ ହାଜର କଲେ,

"ଅତି ବୃଦ୍ଧ ବର ଦେଖି ରାଜା ହରଷିତ
ବୋଇଲେ କନ୍ୟାକୁ ହସ୍ତ ଦିଅ ପୁରୋହିତ ।
ହସ୍ତମଞ୍ଚା କରି ଆଣି ନଳିନୀ କନ୍ୟାକୁ
ବିଧିମତେ ହସ୍ତ ଦେଲେ ନେଇ ସେ ବୃଦ୍ଧକୁ ।
ରାଜାର କୁକର୍ମ ଦେଖି ପୁରବାସୀ ଜନ
କନ୍ୟାଗୁଣ ସ୍ତବ କଲେ ନୀରବ ରୋଦନ ।
କାନ୍ଦନ୍ତି କନ୍ୟାକୁ ଧରି ଜନନୀ ଭଗିନୀ
ଭାଗ୍ୟ ଫଳିତ ସର୍ବସ୍ୱ ଭାଷଇ ନଳିନୀ ।
ମୋ ଭାଗ୍ୟକର୍ମର ଫଳ କରିବି ମୁଁ ଭୋଗ
ମୋ ଦରଦୀ ଜନ ଯେତେ ଶୋକ କର ତ୍ୟାଗ ।
ଏତେକ ସାନ୍ତ୍ୱନା ଦେଇ ବୃଦ୍ଧପତି ସେନ
ରାଜପୁରୀ ଛାଡ଼ି ଗଲା ଷୋଡ଼ଶୀ ନଳିନୀ ।
କାହିଁ ଭାଗ୍ୟ ଡୋରି ଟାଣିନେଲା ନୁହେଁ ଜଣା
ଅନୁଭବୀ ଅଭିଜ୍ଞର ଜୀବନ ଘଟଣା ।"

ପୁରବାସୀମାନେ ହାୟ ବିଧାତା । କି ଦୁର୍ଦ୍ଦଶା ଦେଲୁ । ଏହିପରି କହି କାନ୍ଦ କୋଡ଼ ହୋଇ ରହିଲେ । ନଳିନୀ ବୁଢ଼ା ଘେରସ୍ତକୁ ନେଇ ଯାଇ କିଛି ଦୂରରେ ଗୋଟିଏ ଗାଁରେ ଖଣ୍ଡେ କୁଡ଼ିଆ ଘରେ ବାସ କଲା । ବୁଢ଼ା ଯାହା ଘରେ ଥାଏ ସେ ଗୋଟିଏ ମାଳୀଘର । ସେ ଦିଅଁ ମନ୍ଦିରରେ ଫୁଲଦେଇ ଯାହା ଭୋଗ ପ୍ରସାଦ ପାଏ

ବୁଢ଼ାକୁ ଦସ୍ତାକର କିଛି କିଛି ଦିଏ । ନଳମା ସିଲେଇ କରି ଯେଉଁ ପଇସା ପାଏ, ବୁଢ଼ା ପଣ୍ଡିତ ଦେବତା ଭଳି ସେବା କରି ଚାଲୁଥାଏ, ତା'ର ଗୁଣ ରୂପ ଯୌବନ ଦେଖି ଗାଁ ଟୋକା ଟାହୁଲେଇ ହୁଅନ୍ତି ଗପ କରିବା ବାହାନାରେ ଯାହାର ଦରକାର ନାହିଁ ସିଏ ବି ଜାମା ପାଇଜାମା ସିଲେଇ କରିବାକୁ ଦିଅନ୍ତି । ନଳମା ସିଲେଇ କରି ଭଲ ଦି' ପଇସା ପାଏ । ଏମିତି କରି ଦିନ କଟିଯାଏ ।

ଥରେ ରାଜାଘରେ ଅଭିଷେକ ଉତ୍ସବ ହେବାରୁ ବହୁତ ଯାତ୍ରା, ପାଲା ଭାଷଣ, ପ୍ରଦର୍ଶନୀ ହେଲା । ଓଡ଼ିଆ ଘର ଝିଅ ବୋହୂଏ ଦେଖିବାକୁ ବାହାରିବାରୁ ନଳମା ବୁଢ଼ା ପଣ୍ଡିତଙ୍କୁ କହିଲା, ମୁଁ ଏମାନଙ୍କ ସଙ୍ଗରେ ଟିକିଏ ଉତ୍ସବ ଦେଖିବାକୁ ଯିବି । ବୁଢ଼ା ଖୁସି ହୋଇ କହିଲା, ଯାଅ ଦେଖିଆସିବ । 'ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା' ହେଲେତ ବେଶ୍ ଆଦର ଯତ୍ନ ପାଆନ୍ତି । ସେଇଥିପାଇଁ ନଳମା ବାହାରି ଯିବାରୁ ବୃଦ୍ଧବେଶୀ ମଧୁ ବ୍ରହ୍ମଦୈତ୍ୟକୁ ଡାକି କହିଲା, ତୁମେ ଅଦୃଶ୍ୟରେ ନଳମାକୁ ଜଗିକରି ନେଇଯିବ ଏବଂ ନେଇ ଆସିବ । ତା'ର ଯେପରି କିଛି ବିପଦ ନ ହୁଏ ଦେଖିବ । ସେ ହଉ କହି ଯିବାରୁ, ଦଇତକୁ ପୁଣି କହିଲା—ମୋ ପାଇଁ ଘୋଡ଼ାଟିଏ ଯୋଗାଡ଼ କରି ଆଣ । ସେ ଯାଇ ତା ଶ୍ୱଶୁର ଘରୁ ଘୋଡ଼ାଟିଏ ବାନ୍ଧି ଆଣିଲା । ପୁଣି ନଳୀ ଦଇତକୁ କହିଲା, ତୁମେ ଘର ଜଗି ରୁହ, ଏଇପରି କହି ଶରୀରର ଚର୍ମ ପୋଷାକଟି ଖୋଲି ରଖି ସେ ଘୋଡ଼ାରେ ଚଢ଼ି ମେଳା ଦେଖିବାକୁ ବାହାରି ଗଲା । ବାଟରେ, ଘାଟରେ, ଯାହାରେ ଯିଏ ତାକୁ ଦେଖୁଥାଏ କହୁଥାଏ—ଏପରି ରୂପବାନ୍ ଯୁବକ ଏ ଦେଶକୁ କୁଆଡ଼ୁ ଆସିଲା । ଛଟକା ଯୁବତୀଙ୍କ ଆଖି ଅଟକି ଯାଉଥାଏ ତାକୁ ଦେଖି । ଯାହାରେ ଘଣ୍ଟାଏ ବୁଲି ମଧୁ ଘରକୁ ଲେଉଟି ଆସି ଘୋଡ଼ାକୁ ବିଦାୟ କରି, ନିଜ ପୋଷାକ ପିନ୍ଧି ବସିଲା । କିଛି ସମୟ ବାଦେ ନଳମା ଆସିବାରୁ ପତି ପତ୍ନୀ ଦୁହେଁ ସେ ରାତିଟା

କଟାଇଲେ । ତହିଁ ଆରଦିନ ସକାଳୁ ସେ ମାଲୁଣି ଉପାୟ କରି ନଳିନୀଙ୍କୁ ଡାକିବାରୁ ନଳିନୀ ପତିସେବା ସାରିଗଲା ।

ମାଲୁଣୀ ବୁଢ଼ୀ କହିଲା, ନଳିନୀ ଦେଖ ! ତୁମପରି ଭାଗ୍ୟବତୀ ଦୁନିଆ ଭିତରେ ନାହିଁ । ତୁମର ପତି ମଦନମୋହନଠାରୁ ବଳି ସୁନ୍ଦର ଯୁବକ । ଏହା ଶୁଣି ନଳିନୀ ଥଟ୍ଟା ମଣି କହିଲା, ଯିଏ ଯେତେ ଥଟ୍ଟା କରୁ ପଛେ ସେ ମୋର ସର୍ବସ୍ୱ । ଶାସ୍ତ୍ର କହୁଛି—

'ପତିରେକୋ ଗୁରୁ ସ୍ତ୍ରୀଣାଂ ସର୍ବସ୍ୱାଭ୍ୟଃ ଗତୋଗୁରୁଂ

ସେହି ବୃଦ୍ଧପତି ମୋର ଗୁରୁ ଦେବତା । ଏହାଶୁଣି ମାଲୁଣୀ କହିଲା ମୋ କଥାକୁ ତୁ ଥଟ୍ଟା ମଣିଲୁକି ? ତାହା ନୁହେଁ, କାଲି ମୁଁ ନିଜ ଆଖିରେ ଦେଖିଛି । ସେ ଗନ୍ଧର୍ବ ପରି ସୁନ୍ଦର ଯୁବକ । କାହିଁକି ଯେ ବୁଢ଼ା ବେଶ ଧରି ଅଛନ୍ତି ତାଙ୍କୁ ଜଣା । ନଳିନୀ କହିଲା—

ଯାହା ନ ଦେଖିବ ନିଜ ନୟନେ
ପରତେ ନ ଯିବ ଗୁରୁ ବଚନେ ।'

ମୁଁ ନ ଦେଖି କେମିତି ସବୁ କଥା ମାନିନେବି । ମାଲୁଣୀର ଚରକାଳ ଚଳୁଘ । ସେ କହିଲା, ଆଚ୍ଛା ଆଜି ଗୋଟାଏ କାର୍ଯ୍ୟକର । ନିଜ ଆଖିରେ ଦେଖିଲେ ବିଶ୍ୱାସ କରିବୁ ? ନଳିନୀ କହିଲା କ'ଣ କରିବ । ମାଲୁଣୀ କହିଲା, କାଲି ଯେପରି କରିଥିଲୁ ସେହିପରି ଯାହା ଦେଖି ଯିବୁ କହି ଆସି ମୋ ଘରେ ଲୁଚି ରହ । ଦେଖିବୁ ମୋ କହିବା ସତ କି ମିଛ । ନଳିନୀ ମାଲୁଣୀ କଥା ମାନି ଆସି ସଞ୍ଜବେଳକୁ ବୁଢ଼ା ପତିଙ୍କୁ ଖୁଆଇ କହିଲା, କାଲିଠାରୁ ଆଜି ଭଲ ଗାଇବାଲା ଆସି ଗାଆଣ କରିବେ । ମାଇପେ ସବୁ ଯାଉଛନ୍ତି । ମୁଁ ଟିକିଏ ଯାଇଥାନ୍ତି ଯଦି ଅନୁମତି ଦିଅନ୍ତ । ଏକଥା ଶୁଣି ବୁଢ଼ା କହିଲା, ଅଚ୍ଛା ହଉ ଯାଅ । ବେଶି ଡେରିଯାଏ ରହିବ ନାହିଁ । ସେଇଠୁ ନଳିନୀ ଆସି ମାଲୁଣୀ ଘରେ ଲୁଚି ରହିଲା ।

ଏଣେ ମଧୁ ମନ ଛକପକ ହେବାରୁ ସେ ଦଇତକୁ କହିଲା, ମୋ ଘୋଡ଼ାଟା ନେଇଆ । ଦଇତ ଘୋଡ଼ା ଆଣି ଦେବାରୁ ମଧୁ ଚର୍ମ ପୋଷାକ ଉପରେ ରଖି ଘୋଡ଼ାରେ ବସି ରାଜାଘର ଆଡ଼େ ବାହାରିଗଲା । ଏଣେ ତ ନଳିମା ଲୁଚି ରହି ସବୁ ଦେଖିଥିଲା । ନିଜ ସ୍ୱାମୀର ଯେମିତି ମଦନ ପରି ରୂପଯୌବନ ଦେଖିଲା, ତା' ଆନନ୍ଦର ସୀମା ରହିଲା ନାହିଁ । ସେ ଭଗବାନଙ୍କୁ ଅସୁମାରି ପ୍ରଣାମ ବାଡି ମାଲୁଣୀକି କହିଲା, ତୁମ କଥା ସବୁ ସତ ହେଲା, ହେଲେ ଏବେ କଣ କରିବ କହୁନାହଁ । ମାଲୁଣୀ ହସି କହିଲା, ଏବେ ବୁଢ଼ା ବରକୁ ଟୋକା ବର ପାଇଲ । ମୁଁ ବୁଢ଼ୀଟା କହିବି କ'ଣ ? ହଉ ଯାଅ, ସେ ଚର୍ମବେଶ ପୋଷାକଟିକୁ ଲୁଚାଇ ରଖ । ନଷ୍ଟ କରନାହିଁ କାଳେ କିଛି ବିପଦ ଘଟିପାରେ । ମାଲୁଣୀ ଏ କଥା କହିବାରୁ ନଳିମା ଯାଇ ସେ ପୋଷାକଟିକୁ ପୁଜୁଳା କରି ଦେଇ ଆସିଲା । ମାଲୁଣୀ ସେ'ଠାକୁ ଦେଖି କହିଲା, ତମ ନାଗରଟି ବଡ଼ ଛଇଳ ଏକା । ନୋହିଲେ କ'ଣ ସମସ୍ତଙ୍କୁ ଭୁଲାଇ ରଖିଥାନ୍ତେ । ହଉ ଦେଖିବା ଆଜ ତାଙ୍କ ଭିଡିକ ପତିଆ କିମିତି ହେବ । ଆସ, ଆମେ ଦୁହେଁ ଯାତ୍ରା ଦେଖି ଯିବା ଏହା କହି ନଳିମାକୁ ନେଇ ସେ ଯାତ୍ରା ଦେଖିଗଲେ ।

ଦଇବ ଯୋଗକୁ ତା ଭଉଣୀମାନେ ଯେଉଁଠି ସ୍ୱାମୀଙ୍କ ସଙ୍ଗେ ବସି ଯାତ୍ରା ଦେଖୁଥିଲେ, ନଳିମା ଯାଇ ସେଇଠି ପହଞ୍ଚିଲା । ନଳିମାକୁ ଚିହ୍ନି 'ଭଉଣୀମାନେ' ଡାକିବାରୁ ସେ ଯାଇ ତାଙ୍କ ମେଳରେ ବସିଲା । ଭଉଣୀମାନେ କହିଲେ—ତୋ ବାହାଘର ଯେମିତି ହୋଇଗଲା, ବାପା ଆମକୁ ମାନଙ୍କ ଭିତରେ ବାହା ଦେଇ ଦେଲେ । ତୁ'ତ ଦେଖିଲୁ ଏବେ ଦେଖ୍ ଏଇ ମୋର ପତି । ସିଏ କହିଲା ଏଇ ମୋର ସ୍ୱାମୀ ଏମିତିକରି ଭଉଣୀମାନେ ଯେମିତି ନିଜ ନିଜ ସ୍ୱାମୀଙ୍କି ଚିହ୍ନେଇ ଦେଲେ ନଳିମା ମଧ୍ୟ ଭାବରେ ବସିଥିବା

ମଧୁସୂଦନଙ୍କୁ ଦେଖେଇ କହିଲା, ସେଇ ମୋର ପତି । ସେଇଠୁ ଉଉଣୀମାନେ ଜଭ କାମୁଡ଼ି ପକାଇ କହିଲେ, ସର୍ବନାଶ ! ଆଲେ ତୁ କହୁଚୁ କ'ଣ ? ବାପା ପରା ତୋତେ ନବେବର୍ଷିଆ ବୁଢ଼ା ସଙ୍ଗରେ ବାହା ଦେଇଛନ୍ତି ! ତୁ ଗୋଟିଏ କାଇଶି ବର୍ଷର ସୁନ୍ଦର ଯୁବକକୁ ପତି କଲୁ କେବେ ? ଏହା କହି ସେମାନେ ଦୌଡ଼ଯାଇ କହିଲେ, ବାପା ! ତୁମେ ପରା ନଳମାକୁ ଗୋଟିଏ ବୁଢ଼ା ବରକୁ ବାହା ଦେଇଥିଲ । ଅବକା ସେ ତାକୁ ଛାଡ଼ି ଗୋଟିଏ ଯୁବକ ସାଙ୍ଗକୁ ପାଇ ବ୍ୟଭିଚାରିଣୀ ହେଲାଣି । ଆମକୁ ଦେଖେଇ ଦେଲା । ତା' ପତି ଜଣେ କାଇଶି ବର୍ଷର ସୁନ୍ଦର ଟୋକା ।

ଝିଅମାନଙ୍କ କଥା ଶୁଣି ରାଜା ଏକବାରେ ନିଆଁ ଭଳି ହୋଇ ଆସି ନଳମାକୁ ପଚାରିଲେ, ଆଲେ ନଳମା ! କୋ ପତି କାହିଁ ? ନଳମା ବାପାକୁ ଜୁହାର ହୋଇ ପଦ୍ମାରେ ବସିଥିବା ମଧୁସୂଦନଙ୍କୁ ଦେଖେଇଦେଲା । ତାକୁ ଦେଖି ରାଜା ଛି ଛି କହି କୋଇଲେ, ତୁ ମୋର ଝିଅ ହୋଇ ବ୍ୟଭିଚାର କଲୁ । ମୁଁ ତୋତେ ଗୋଟିଏ ବୁଢ଼ାକୁ ବାହାଦେଲି । ତୁ ତାକୁ ଛାଡ଼ି କୁଆଡ଼ୁ ଗୋଟାଏ ଯୁବକକୁ କରିଲୁଣି ! ଏହା ଶୁଣି ନଳମା କହିଲା, ବାପା ! ମୁଁ ପରା କହୁଥିଲି ଭାଗ୍ୟ ଫଳନ୍ତି ସର୍ବଦ, ମୋ କର୍ମର ଫଳ ମୁଁ ଭୋଗୁଚି । ତୁମେ ମୋତେ ବୁଢ଼ାବର ସଙ୍ଗରେ ବାହା ଦେଲ । ସେଇ ବୁଢ଼ା ବରଟି ମୋ ଭାଗ୍ୟକୁ ଯୁବକ ହୋଇଗଲା । ଏ କଥାରେ ରାଜା ଧିକ୍କାର କରିବାରୁ ନଳମା କହିଲା, ବୃଥା ଧିକ୍କାର କର କ'ଣ ହବ । ଯଦି ସତ ମିଛ ବୁଝିବାକୁ ଇଚ୍ଛା ଅଛି, ତାଙ୍କୁ ଡକେଇ ଆଣି ପଚାର ବୁଝ । ତା କଥା ଶୁଣି ରାଜା ଅର୍ଦ୍ଦଳୀକୁ ପଠାଇ ମଧୁସୂଦନଙ୍କୁ ଡକାଇ ଆଣିଲେ । ଦୂରରୁ ଦେଖି ରାଜା ଭାବିଲେ, ଇଏତ ରୂପରେ ରାମ କାମଙ୍କୁ ଜିଣିଚ, ଇଏ କାହିଁକି ହବ । ଏମିତ ଭାବୁ ଭାବୁ ମଧୁସୂଦନ ଆସି ପାଖରେ ହେଲା । ନିକଟ ହେବାରୁ ନଳମା ସେଇ

ଚର୍ମ ପୋଷାକଟି ମଧୁ ଉପରକୁ ଫିଙ୍ଗିଦେବାରୁ ସେ'ଟାକୁ ପିନ୍ଧି ପୂର୍ବପର ବୁଢ଼ା ହୋଇଗଲା । ରଜା ତାକୁ ଦେଖି ଯେପରି ବିସ୍ମିତ ହେଲେ, ସେହିପରି ସବୁ ଜୋଇଁଠୁ ସାନ ଜୋଇଁ ଯେ ସୁନ୍ଦରିଆ ଦେଖି ଖୁସି ହେଲେ ବି ।

ନିକଟ ହେବାରୁ ରଜା ମଧୁକୁ ପଚାରିଲେ, ତୁମର ନାମ ଧାମ, କୁଳ ଗୋତ୍ର କଣ କୁହ ? ଆଉ ସେ ବୃଦ୍ଧବେଶ ନ ଧରି ନିଜ ବେଶ ଧାରଣ କର । ଏହାଶୁଣି ମଧୁସୂଦନ ସେ'ଟାକୁ ଖୋଲି ଦେଇ ନିଜରୂପ ଧାରଣ କଲା ଓ ନିଜର କୁଳ ଗ୍ରାମର ପରିଚୟ ଦେଲା । ତାହା ଶୁଣି ରଜା ଖୁସି ହୋଇ ନଳିନୀ ଓ ମଧୁକୁ ସବାରି ପାଲିଙ୍କିରେ ବସାଇ ରାଜପୁରକୁ ନେଇଗଲେ । ତହିଁ ଆରଦିନ ସକାଳେ ରଜା ସବୁ ଜୋଇଁଙ୍କ ଡାକ କହିଲେ, ତୁମେସବୁ ଆଜି ଶିକାର କରିବାକୁ ଯାଅ । ପ୍ରତ୍ୟେକେ ଗୋଟିଏ ଲେଖା ମୃଗ ମାରି ଆଣିବ । ଆଜି ଆମର ଉତ୍ସବ ଶେଷହେଉଛି । ତେଣୁ ଗୋଟାଏ ବଡ଼ ଭଳିମର ଭୋଜି କରି ସମସ୍ତଙ୍କୁ ଦେବା । ଏକଥା ଶୁଣି ମଧୁକୁ ଛାଡ଼ି ବାକି ଜୋଇଁ ସବୁ ଏକାଠା ହୋଇ ଘୋଡ଼ାରେ ଚଢ଼ି ଧନୁଶର ଓ ପିସ୍ତଲ ନେଇ ବାହାରିଗଲେ । ନଳିନୀର ଉପରେଟି ଜୋଇଁ ତାଙ୍କ ଭାର୍ଯ୍ୟାମାନେ କହିଥିବାରୁ ତାକୁ ସଙ୍ଗରେ ନେଲେ ନାହିଁ ।

ସଢ଼ୁମାନଙ୍କର ଏପରି କାର୍ଯ୍ୟ ଦେଖି ମଧୁସୂଦନ ମନରେ ରାଗ ହେଲା । ତେଣୁ ସେ ବ୍ରହ୍ମଦୈତ୍ୟଙ୍କୁ ସ୍ମରଣ କରିବାରୁ ସେ ଆସିଲେ । ତାକୁ ମଧୁ କହିଲା, ବନସ୍ତ ମଧ୍ୟରେ ଗୁରିକୋଶ ଆସୃତନର ଚାଲିବାକୁ ଯେପରି ତା' ଭିତରେ ଆଶ୍ରମଟିଏ ତିଆରି କରି ଦିଅ । ଚକ୍ଷୁର ଭିତରେ ଯେପରି ହୋଇଯାଏ । ବ୍ରହ୍ମଦୈତ୍ୟ ହଁ କହି ଯାଇ ଆଶ୍ରମ ତିଆରି କରିବାରେ ଲାଗିପଡ଼ିଲା । ମଧୁ-ନଳିନୀ ଓ ଦାଉଡ଼ିକ କହିଲା—

"ଯାଅରେ ଦଉଡ଼ି ବେଗେ ଯା ପଥ୍ ଚଳି
ଏ ବନରୁ ବାନ୍ଧିଆଣ ଯେତେ ମୃଗବଳି ।
ହିଂସ୍ର ପଶୁ ଛାଡ଼ି ଆନ ପଶୁ ଯେତେ ବାନ୍ଧି ଆଣ
ମୋ ଆଶ୍ରମ ଉପବନେ ଛାଡ଼ ଭଳି ଭଳି ।
ଶୃଙ୍ଗଧାରୀ ପଶୁ ଯେତେ କିଛି ନ ରଖ ବନସ୍ତେ
ମୋ କାନନେ ଆଣି ଛାଡ଼ କରନ୍ତୁ ସେ କେଳି ।
ଆଶ୍ରମ ଦକ୍ଷିଣ ଦ୍ୱାରେ ଜଗି ନ ଛାଡ଼ିବୁ କାରେ
ଅଭୟରେ ଏହି କାର୍ଯ୍ୟ କରିବୁରେ ନଳୀ ।

ଏମନ୍ତ ବରଦ କରିବାରୁ ଦଉଡ଼ି ସଙ୍ଗେ ସଙ୍ଗେ ବଣରେ ଯେତେ ଶିଙ୍ଗବାଲା ଜାନୁଆର ଥିଲେ ସବୁ ବାନ୍ଧିଆଣି ବ୍ରହ୍ମଦୈତ୍ୟ କରିଥିବା ଆଶ୍ରମ ଉପବନରେ ଛାଡ଼ିଦେଲା । ପିସ୍ତଲ୍ ନଳୀଟା ଦ୍ୱାର ଜଗି ରହିଲା । ଏଣୁ ମଧୁସୂଦନ ଘୋଡ଼ାରେ ଚଢ଼ି ଯାଇ ଆଶ୍ରମରେ କପଟ ସାଧୁବେଶ ଧରି ବସି ଧ୍ୟାନକଲା । ବ୍ରହ୍ମଦୈତ୍ୟ ତା'ର ଶିଷ୍ୟ ହୋଇ ତା ସେବା କଲା ।

ଏଣେ ରଜାଙ୍କ ଜୋଇଁ ସବୁ ବଣଯାକ ବୁଲି ବୁଲି ହାଲିଆ । ମୃଗ ଦୂରେ ଥାଉ, ତାଙ୍କ ଫରିଆଟାଏ ବି ପାଇଲେ ନାହିଁ । ଦେଖୁ ଦେଖୁ ବେଳ ଆଖିରି । ଏମାନେ ମୃଗ ନପାଇ ବିରକ୍ତ ହୋଇ ଘେରା ବାଡ଼ ମଝିରେ ପଶୁଯାକ ଠେଣିହୋଇ ବୁଲୁଛନ୍ତି । ସେଇଠୁ ଧନୁରେ ଶର ଯୋଖି ମୃଗ ମାରିବାକୁ ହେମିତି ଆଗେଇଛନ୍ତି ଶିଷ୍ୟରୂପି ବ୍ରହ୍ମଦୈତ୍ୟ ଆସି ମନାକଲା, ଆଶ୍ରମ ମୃଗଙ୍କୁ ମାରନା । ହେଲେ ମାନୁଛି କିଏ ? ଶାସ୍ତ୍ର କହୁଛି, ଖଳମନା ଲୋକର— 'ବିଦ୍ୟା ବିବାଦାୟ ଧନଂ ମଦାୟ, ବଳଂ ବପୁଷା ପରପୀଡ଼ନାୟ ।' ବିଦ୍ୟା ହେଲେ ବିବାଦରେ ଲାଗେ, ଧନ ହେଲେ ମତବାଦରେ ଲାଗେ, ଦେହରେ ବଳ ହେଲେ ପରକୁ ପୀଡ଼ା ଦେବାରେ ଲାଗେ ।

ଏମାନେ ଯେମିତି ଜବରଦସ୍ତି କରି ମୃଗ ମାରିବାକୁ ପଶିଛନ୍ତି ନଳୀ ଫୁଟିଲା ଠୋ ଡା ଢାଃ । କମାଣ ଆବାଜ ପାଇ ଅମାନିଆ ଗୋଟାକ ଉପରେ ଗୋଟାଏ ପଡ଼ି ଅଜ୍ଞାନ ହୋଇଗଲେ । ଦଣ୍ଡେକାଳ ପିବାକୁ ଚେଷ୍ଟା ଦେଲା । ତତ୍ପରେ ସେମାନେ ଶିଷ୍ୟଙ୍କ ମାର୍ଫତରେ ଯାଇ ସନ୍ନ୍ୟାସୀଙ୍କୁ ଭେଟି ପ୍ରଣାମ କଲେ । ସନ୍ନ୍ୟାସୀ କଲ୍ୟାଣ କରି ଆସିବାର କାରଣ ପୁଚ୍ଛିବାରୁ ଏମାନେ ହାତଯୋଡ଼ି କହିଲେ, ଆମେ ଆଜ ଗୁଳି ମୁହଁରେ ପଡ଼ି ସବୁ ବଳ ହରେଇଛୁ । ଏବେକା ଆମର ପ୍ରାର୍ଥନା—ଆମକୁ ଗୋଟିଏ ଲେଖା ମୃଗ ଦିଅନ୍ତୁ । ନ ହେଲେ ଆମର ମହତ ରହିବ ନାହିଁ । ଶ୍ୱଶୁର ପାଖରେ ମୁହଁ ଦେଖେଇ ହେବ ନାହିଁ । ଘରଣୀ ପାଖକୁ ନାକ କାଟିଦେଇ ଯିବାକୁ ହେବ । ଏହାଶୁଣି କପଟ ବେଶୀ ସାଧୁ କହିଲେ, ତୁମେ ଯଦି ମୋର ଦାସ ହେଲ ବୋଲି ସ୍ୱୀକାର କରିବ ତାହା ହେଲେ ଗୋଟିଏ କରି ମୃଗ ଦେବି । ଏହାଶୁଣି ଏମାନଙ୍କ ମଧ୍ୟରେ ବିଚାର ହେଲା, ଆମେ ଯଦି ତା କଥାମାନି ମୃଗଟିଏ ଲେଖା ପାଇବୁ, କହିବାକୁ ଆପତ୍ତି କ'ଣ ଅଛି ? ଆମ୍ଭଛଡ଼ା ଆଉ କେହି ଜଣେ ନାହିଁ ଯେ ପ୍ରକାଶ କରିଦେଲେ ଆମର ମାନହାନି ଘଟିବ । ଏମନ୍ତ ବିଚାର କରି ଏମାନେ ଦାସ ହେବାକୁ ମତ ଦେଲେ । ଏହାଶୁଣି ସନ୍ନ୍ୟାସୀ ଶିଷ୍ୟରୂପୀ ବୃହସ୍ପତିଙ୍କୁ କହିଲେ, ମୋ ଚମୁଟା ତତେଇ ଏମାନଙ୍କ ପିଣ୍ଡିରେ ଲଚ୍ଛିଦିଅ । ଦାସ ଚିହ୍ନ ହୋଇ ଯାଉ । ତା ପରେ ତାଙ୍କୁ ଗୋଟିଏ କରି ମୃଗ ମାରି ନେବାକୁ ଦିଅ ।

ସାଧୁଙ୍କ ମୁହଁରୁ ଏ କଥା ଶୁଣି ଏମାନେ ଲଗୁଦିଗା ହେବେ କ ନାହିଁ ବିଚାର କରୁଛନ୍ତି । ଏଇ ବେଳେ ବୃହସ୍ପତି ଧୁନିରେ ଚମୁଟା ତତେଇ ଆଣି ଜଣଙ୍କ ପିଣ୍ଡିରୁ ଲୁଗା ଉଠାଇ ବସାଇ ଦେଲା ଚେ ! ଇଲେ ବୋଉ କହି ସେ ଲୋକଟି ଯେମିତି ଦୁଇ ହାତ ଦୂରି ଆସି ଆହା, ଉହୁ ହେଲା ଅନ୍ୟମାନେ ନବାକୁ ବାଧ୍ୟହେଲେ ।

ସମସ୍ତଙ୍କ ପିଠିରେ ତତଲା ଲୁହାର ଲମ୍ବା ଦାଗ ଲାଗିବାରୁ ଜଳୁଥାଏ, ପୋଡୁଥାଏ । ସେମିତ ଅବସ୍ଥାରେ ଆସି ପ୍ରତ୍ୟେକ ଗୋଟିଏ କରି ମୃଗମାରି ନେଇ ଲେଉଟି ଗଲେ । ଏଣେ ବୁଢ଼ାଦେଢ଼ା ଦୁଇଟା ମୃଗ ମାରି ନେଇ ମଧୁସୂଦନଙ୍କୁ କାନ୍ଧରେ ବୋହି ଏମାନଙ୍କ ପହଞ୍ଚିବା ପୂର୍ବରୁ ଶ୍ୱଶୁର ଘର ପାଖରେ ପହଞ୍ଚାଇ ଦେଇ ଆସିଲା । ମଧୁସୂଦନର ମୃଗ ଦେଖି ଶ୍ୱଶୁର ଖୁସିହୋଇ ସଢୁମାନେ କୁଆଡ଼େ ଗଲେକ ପଚାରିବାରୁ, ମଧୁସୂଦନ କହିଲା—ସେମାନେ ତ ମୋତେ ସଙ୍ଗରେ ନ ନେଇ ଗୁଡ଼ିଗଲେ । ତା'ପରେ ଆଉ ତାଙ୍କର ମୋର ଭେଟ ହୋଇନାହିଁ । ଏଇବେଳେ ଅନ୍ୟ ଜୋଇଁମାନେ ଗୋଟିଏ ଲେଖା ମଲାମୃଗ ଧରି ଆସି ପହଞ୍ଚିଲେ । ସବୁ ଜୋଇଁ ଆଣିଥିବା ମାଂସରେ କୋଡ଼ିଏ ହାଣ୍ଡି ମାଂସ ଝୋଳ କରି ପୂରି ସହିତ ସମସ୍ତଙ୍କୁ ରଜା ଖାଇବାକୁ ଦେଲେ । ହେଲେ ଆଗ ଜୋଇଁମାନେ ଯୋଉ ମାଂସ ଆଣିଥିଲେ ସେଗୁଡ଼ାକ ବୁଢ଼ା ହରିଣର ମାଂସ ଥିବାରୁ ଭଲ ସିଝି ନ ଥିଲା । ବନ୍ଧୁ ବିବାଦରେ ଖାଇବାକୁ ବସି ଯେତେ ଟାଣିଲେ ବି ମାଂସ ଗୁଡ଼ାକ ଦାନ୍ତରେ ଛିଡ଼ୁ ନଥାଏ । ଏଗୁଡ଼ିକ କି ମାଂସ କହି ସମସ୍ତେ ଛି ଛିକରି କହିବାରୁ, ସାନ ଜୋଇଁ ଆଣିଥିବା ମାଂସ ଦେବାକୁ ରଜା ହୁକୁମ କଲେ । ସୂପକାରମାନେ ସେ ମାଂସ ଆଣି ଦେବାରୁ ସମସ୍ତେ ଖାଇ ପ୍ରଶଂସା କଲେ । ଏପରି ପ୍ରଶଂସା ଶୁଣି ରଜା ମଧୁଙ୍କୁ ସାବାସ ଦେବାରୁ ମଧୁ କହିଲା, ଦାସ ଓ ମୁନିବ ଜିନିଷ ବାଛିବା କ'ଣ ଏକରକମର ହେବ ? ସେମାନେ ମୋର ଦାସ ବୋଲି ମାଗିବା ଜିନିଷ ବୁଢ଼ାଦେଖି ଦେଇଥିଲି । ଏ କଥାରେ ରଜା ବିସ୍ମିତ ହୋଇ ଦାସ ମାନେ ପଚାରିବାରୁ, ମଧୁ କହିଲା— ସେମାନେ ମୋର ଦାସ ଅଟନ୍ତି । ରଜା ପଚାରିଲେ ତା'ର ପ୍ରମାଣ ? ମଧୁ କହିଲା—ମୋର ଯିଏ ଦାସ ହୁଅନ୍ତି, ମୁଁ ତାଙ୍କ ପିଠିରେ ଚେଙ୍ଗା ଦାଗ ଲଗାଉଥାଏଁ । ଏମାନଙ୍କ ପିଠିରେ ମୋର ଦାସଦାଗ ରହିଛି ।

ଏକଥା ଶୁଣି ଶଳା ଓ ଘରର ଅଣ୍ଟା ଲୋକମାନେ ଯାଇ ତାଙ୍କ ପିଠିକୁ ଲୁଗା ଟେକି ଦେଖିଲା ବେଳକୁ ସମସ୍ତଙ୍କ ପିଠିରେ ଲୁହାଦାଗ ଲଗି ଯାଇଚ । ସେଇଠୁ ଆଉ ଜୋଇଁମାନେ ରହିବେ କଅଣ ଯେ ଯାହାର ଭାର୍ଯ୍ୟାଟିମାନଙ୍କୁ ନେଇ ସିଧାବାଟ ଧରିଲେ । ଶଳାମାନେ ଫୁ ଫା ଫୁଲ୍ ବୋଲି କରୁଥାନ୍ତି । ବାକି ଲୋକେ ମୁହଁରେ ହାତଦେଇ ହସୁଥାନ୍ତି । ରଜା ସେଇଠି ଘୋଷଣା କଲେ ମୋ ସାନ ଝିଅ ଯାହା କହିଥିଲା 'କପାଳ ଲେଖନ ପୁନଃ ପ୍ରସ୍ତାତି' ଅର୍ଥାତ୍ ମନୁଷ୍ୟ ନିଜ ଭାଗ୍ୟବଳରେ ବଳେ ଧର୍ମ କର୍ମର ଫଳ ଭୋଗ କଲେ । ସେ କଥା ଅକ୍ଷରେ ଅକ୍ଷରେ ସତ ହୋଇଛି । ଏହା ଶୁଣି ସମସ୍ତେ ନନ୍ଦମାଙ୍କୁ ଧନ୍ୟ ଧନ୍ୟ କହିଲେ ।

ଏହାପରେ ଛ' ଜୋଇଁ ଯାଇ ଶ୍ୱଶୁର ସଙ୍ଗରେ ବିବାଦ କଲେ । ମଧୁ ନନ୍ଦମାଙ୍କୁ ଆଦର ଦେଇ ରଖିଥିବାରୁ ଓ ତାଙ୍କୁ ମଧୁ ଦାଗି କହିବାରୁ ମଧୁକୁ ଧରି ଜୀବନ୍ତ ଦଗ୍ଧ କରିବେ ବୋଲି ସେନାବଳ ଧରି ଆସି ଶ୍ୱଶୁରଘରକୁ ଘେରାଉ କଲେ । ଛ' ଜୋଇଁ-ଙ୍କର ବିଶାଳ ଥାଟ ଦେଖି ରଜା ବଡ଼ ଶଙ୍କିତ ହୋଇ ପଡ଼ିଲେ । ସିଏ ଯେତେ ବୁଝାଇଲେ ହେଲା ନାହିଁ । ଶଳାମାନେ ଯୁଦ୍ଧକରି ବନ୍ଦୀ ହେଲେ । ଶ୍ୱଶୁର ବୁଝାଇବାରୁ ଜୋଇଁଏ କହିଲେ ନାଇଁ ସେ ଆମକୁ ଅପମାନ ଦେଇଛି । ଆଉ ଜଣେ ଜୋଇଁ କହିଲା ଖାଲି କ'ଣ ଅପମାନ ! ଲାଞ୍ଛନାଦାଗ ଦାଗି ଦେଇଛି । ଆଉ ଜଣେ କହିଲା ସେ ଆମକୁ ଦାଗୀ କଲା । ଗୋଟିଏ ଶଳା ପାଖରେ ଥିଲା । ସେ କହିଲା ଶୁଖିଲାଣି କ ନାହିଁ ଦେଖିବା । ଏ କଥାରେ ଅଧିକ ରାଗ ବଢ଼ିବାରୁ ଛ' ଜୋଇଁ ଶଳାଟିକି ବାନ୍ଧିଦେଲେ । ଏହା ଦେଖି ରଜା ବଡ଼ ଖିନ୍ନବସ୍ତ ହୋଇଗଲେ ।

ଏଯାଏ ମଧୁ ନୀରବ ଥିଲା । ଶତ୍ରୁଙ୍କ ଦମ୍ଭ ବେଶି ବଢ଼ି ଯିବାର ଦେଖି ଆଗକୁ ଆସି କହିଲା, ଭାଇମାନେ ! ଏପରି ଉତ୍ପାତ ହେଉଛି କାହିଁକି ? ମଧୁର ଏକଥା ଶୁଣି ଛଅଜଣପାଇକ ଯେମିତି ତାକୁ ଧରି ଯାଉଛନ୍ତି ସେଇଠୁ ମଧୁ ଦଉଡ଼ିକୁ ସୁମରି କହିଲା, ସେନାବଳ ସହ ଏମାନଙ୍କୁ ବାନ୍ଧିପକା । ବୁଦ୍ଧୁଦେଇଙ୍କୁ କହିଲା; ପିଟିଦେଇ ଦେ ଶଳାଙ୍କୁ । ନଳକୁ କହିଲା, ଶତ୍ରୁ ରାଜ୍ୟକୁ ଗୁଳି ଚଳେଇ ଚାଲ । ହୁକୁମମାନେ ଯିଏ ଯାହାର କାର୍ଯ୍ୟରେ ଲାଗିଗଲେ ଦଉଡ଼ିଟା ଯାଇ ଛ' ଜୋଇଁଙ୍କୁ ଓଳଅ ପରି ବାନ୍ଧି ପକେଇଦେଲା । ସୈନ୍ୟମାନେ ନଳ ଗୁଳିମାଡ଼ରେ ବହୁତ ମଲେ । ଶଳାମାନଙ୍କୁ ଓ ବୁଦ୍ଧୁଦେଇଙ୍କୁ ନେଇ ମଧୁସୂଦନ ଶତ୍ରୁଙ୍କ ରାଜ୍ୟ ଲଣ୍ଡଭଣ୍ଡ କରି ତାଙ୍କ ବାପ ଭାଇ ବରାଦର ସହ ଜ୍ୟେଷ୍ଠ ଶାଶୁଙ୍କୁ ବନ୍ଦୀ କରି ନେଇ ଆସିଲା । ତା'ପରେ ଜସ୍ତ ଜସ୍ତ ପଦ, ଯୋଉ ଅପମାନ କହିଲେ ନ ସରେ ।

ଛ' ଜୋଇଁ ତିନିଦିନ ବନ୍ଧାହୋଇ ପାଟି ପାକୁ ପାକୁ କରୁଥାନ୍ତି । ପାଣି ମନ୍ଦଏ ପିଇ ନାଇଥାନ୍ତି । ସେ ଦଉଡ଼ି ବନ୍ଧନ ବା କିଏ ଖୋଲିପାରୁଛି । ମଧୁସୂଦନ ସବୁଙ୍କୁ ଆଣି ଏକାଠି କରିବାରୁ ଶ୍ୱଶୁର କହିଲେ, ମଧୁସୂଦନ ଏବେ ତାଙ୍କୁ ମୁକ୍ତିଦିଅ । ତାଙ୍କ କର୍ମର ଫଳ ସେ ପାଇଲେଣି । ମଧୁ କହିଲା, ସେମାନେ କୁଆଡ଼େ ଯିବେ ? ତାଙ୍କ ଦେଶକୁ ମୁଁ ଦଖଲ କରି ନେଇଛି । ଯଦି ସେମାନେ ନିଜ ରହିଥିବା କୋଠା ଓ ରାଜ୍ୟର ଦଶଭାଗରୁ ଭାଗେ ନେଇ ମୋର ଦାଏବଜା ହୋଇ କରଦ ରାଜ୍ୟରୂପେ ରହିବେ, ତାହାହେଲେ ତାଙ୍କୁ ଖୋଲିଦେବି । ନ ହେଲେ ଜେଲଖାନାରେ ଘଣା ପେଲିବେ । ସେ କଥାରେ ନିଷ୍ପତ୍ତି ହେବାରୁ ଛ' ଜୋଇଁ ନିଜର ଥିବା ରାଜ୍ୟର ଛ' ଭାଗରୁ ଭାଗେ ନେଇ ଲେଉଟିଲେ । ବାକି ରାଜ୍ୟକୁ ଏକସୂତ୍ର କରି ନେଇ ମଧୁସୂଦନ ରାଜାଧିରାଜ ପଦ ପାଇଲେ । ସେ ନଳମାଳ

ନେଇ ଯେଉଁଠି ରାଜଧାନୀ କରି ରହିଲ ତା'ର ନାମ ହେଲା ମହାବଳେଶ୍ୱର । ମଞ୍ଜୁଷା କଣ୍ଠ ନେଇ ନ ଥିବାରୁ କଣ୍ଠଦାନ ପରେ ତାଙ୍କୁ ଯେତେ ଆସି ବିବାହର ବହୁତ ଧନରତ୍ନ ଦେଇ ବିଦାୟ ଦେଲେ । ଦଣ୍ଡ ନଳୀର ଶାପ ମୋଚନ ହେବାରୁ ସେମାନେ ଯେଝା ଠାବକୁ ଚାଲିଗଲେ । ମଧୁସୂଦନ ସେଇ ବୃଦ୍ଧ ଚର୍ମବେଶଟି ନେଇ ଗୋଟିଏ ନବେ ବର୍ଷର ବୁଢ଼ାର ରୂପ ତିଆରି କରି ସେଥିରେ ଚର୍ମଟିକ ମଡ଼ାଇ ଭକ୍ତି ଚର୍ମସ୍ମୃତି ସଂରକ୍ଷଣ କରି ଯାଇଛି ବୃଦ୍ଧ ଦେଖିବାକୁ ଲଗାଇ ନିଜଘରୁ ଭୂତକୁ ତଡ଼ି ଭାଇମାନଙ୍କୁ ନିଜପଦରେ ରଖି ଦେଇଛି । ବୁଝିଲୁଟି ଅବୋଲକର । ଏଥିପାଇଁ ଶାସ୍ତ୍ର କହୁଛି—

"ବରମେକୋ ଗୁଣୀପୁତ୍ରୋ ନ ଚ ମୂର୍ଖ ଶତୈରପି
ଏକଚନ୍ଦ୍ରସ୍ତମୋହନ୍ତି ଚ ତାରାଗଣୈ ରପି ।"

ଗୁଡ଼ାଏ ମୂର୍ଖ ପୁଅ ହବାଠାରୁ ଗୋଟିଏ ଗୁଣୀପୁଅ ଭଲ । ଗୋଟିଏ ଚନ୍ଦ୍ର ଆଲୋକ ଦେଇ ଯେପରି ଅନ୍ଧାର ନାଶେ କୋଟିଏ ତାରା ପାରନ୍ତି ନାହିଁ । ଏହି ଯୋଗ ଚର୍ମରକ୍ଷଣ ମୂର୍ତ୍ତି ଦେଖି ଆସିଲୁ ତାହା ଯେହ୍ନ ମଧୁସୂତ—

ଚର୍ମବେଶୀ ମନୁଷ୍ୟର କଥା ହେଲା ଶେଷ
ନବ ରୂପାୟନେ ଭାବ ରହିଛି ବିଶେଷ ।
ତ୍ରୁଟିଥିଲେ ସୁପାଠକେ ଦୋଷ କ୍ଷମାକର,
କହେ ଅଭୟ ଚରଣ କଥା ଶେଷ କର ।



## ପକ୍ଷୀ ଧାମ ମହିମା କଥା

ସେଠାରୁ ଗୋସେଇଁ ଅବୋଲକର ବଢେଁ ଯାଇଁ ବିବାଦ ରାଜ୍ୟରେ ପହଞ୍ଚିଲେ । ସେଠାରେ ପହଞ୍ଚି ଗୋଟିଏ ଧର୍ମଶାଳାରେ ଦୁଇଜଣ ବିଶ୍ରାମ କଲେ । ଅବୋଲକର କିଛି ଚୂଡ଼ା ଗୁଡ଼ ଆଣିବାକୁ ଯାଇ ଦେଖିଲା, ନିକଟରେ ଗୋଟାଏ ବଡ଼ ଅଙ୍କମ ଶିଳା ପଡ଼ିଛି । ଜଣେ ସେବକ ବ୍ରାହ୍ମଣ ସେ ଶିଳାଟା ଉପରକୁ ଯାଇ ହାଣ୍ଡିଏ ଖେଚଡ଼ି ଭାତ ଦୁଇଭାଗ କରି ବାଢ଼ିଦେଲା । ଆକାଶରୁ ଦୁଇଟି ବାଜ ପକ୍ଷୀ ଆସି ସେ ଭାତକୁ ଖାଇ ଉଡ଼ିଗଲେ । ଏହା ଦେଖି ଆସି ଅବୋଲକର ଗୋସାଇଁଙ୍କୁ ସେ କଥା ପଚାରିବାରୁ ଗୋସେଇଁ କହିଲେ—ଇଏତ ବହୁତ ଅଖିଆ ଯୁଗର କଥା । କହିବାକୁ ଦୁଇଦିନ ଲାଗିବ । ଆଚ୍ଛା ଶୁଣ ।

ପୂର୍ବ କାଳରେ ହିରଣ୍ୟ ବଂଶରେ ପ୍ରହେତ ବୋଲି ଅସୁରଟିଏ ଥିଲା । ସେ କଠୋର ତପସ୍ୟା କରି ବିଧାତାଙ୍କଠାରୁ ବର ପାଇ ପ୍ରତାପୀ ହେଲା । ବାହୁ ବଳରେ ସ୍ୱର୍ଗ ମର୍ତ୍ତ୍ୟ ଓ ପାତାଳର ଅଧିକାରୀ ହୋଇ ବଡ଼ ଅତ୍ୟାଚାର କରିବାରୁ ଦେବତାମାନେ ସ୍ୱର୍ଗ ଛାଡ଼ି ଯାଇ ହିମାଳୟରେ ଆଶ୍ରୟ ନେଲେ । ସେଠାରେ ଦେବସଭା ବସି ବିଚାର ହେବାରୁ ବ୍ରହ୍ମା ବୋଇଲେ—କେବଳ ଗରୁଡ଼ ଛଡ଼ା ତାକୁ ମାରି ପାରିବା ଶକ୍ତି କାହାରି ନାହିଁ । ତହୁଁ ଦେବତାଏ ରମ୍ୟକ ଦ୍ୱୀପକୁ ଯାଇ ଗରୁଡ଼ଙ୍କୁ ଅସୁରର ଅତ୍ୟାଚାର କଥା ଜଣାଇ ତାକୁ ମାରି-ଦେବାକୁ ନିବେଦନ କଲେ । ଏହା ଶୁଣି ଗରୁଡ଼ କହିଲେ ଅବକା ଦୁନିଆରେ ଆମେ କିଛି ଲାଭ ନ ଦେଲେ କ'ଣ କାମ ନେଇ ହେଉଛି ? ଆମେ ପ୍ରଭୁଙ୍କର ଦାସ । ଅମଳା କର୍ମସୂତ୍ର, ଅମଳାଚନ୍ଦ୍ର ଯୁଗରେ ଆଗେ ବଅ, ପଛେ ଖଅ । ମୋତେ ତୁମ୍ଭେ ଆଗେ କଣ ଦେବ ।

ବୁଝ । ତାପରେ ମୁଁ ଅସୁରକୁ ମାରିବାକୁ ଯିବ । ନ ହେଲେ ତୁମ ପୁଅ ଭାର୍ଯ୍ୟା, ଧନ ଦୌଲତ ଗଲେ, ଉତ୍ତର ମୋର ଯାଏ ଆସେ କଣ ?

ଏହା ଶୁଣି ଦେବତା କହିଲେ, ତୁମେତ ଲକ୍ଷ୍ମୀନାରାୟଣ ଭାରତଙ୍କୁ ପିଠିରେ ବହି ବୁଲୁଚ, ତା'ଠାରୁ କୋଉ ବଡ଼ ଜିନିଷ ଅଛି ଯେ ତୁମକୁ ଦବୁ ? ହଉ, କହୁଚ ଯଦି ଆମେ ତୁମ ନାମରେ ଗୋଟିଏ ତୀର୍ଥ ଗଢ଼ି ଦେବୁ । ତୁମ ସ୍ମୃତି ଚିରକାଳ ରହିଥିବ । ଏହା ଶୁଣି ଗରୁଡ଼ କହିଲେ, ଭଲ କଥା । ନାମ କାଳସ୍ୱେ ସବୁ କୋଉ ଜୁଟେତା । ତା ହେଲେ ତୁମେ ଯାଇ ସୁମେରୁ ଶିଖରେ ଲୁଚିରୁହ, ମୁଁ ଅସୁରକୁ ମାରିବାର ସୁବିଧା କରୁଛି । ତହୁଁ ଦେବତାଏ ଲେଉଟି-ବାରୁ, ଗରୁଡ଼ ଭାବିଲେ—ବଡ଼ ଶଙ୍କଟ ହେଲା । ଶାସ୍ତ୍ର କହୁଛି—

"କେବା ନସ୍ୟ ପରିଭବ-ପଦଂ ନଷ୍ଟକାରମ୍ଭ ଯତ୍ନଃ ।"

'ପରିଣାମ ନ ବୁଝି ଯେ କାର୍ଯ୍ୟାରମ୍ଭ କରେ
ଅକୃତକାର୍ଯ୍ୟରୁ ହେୟ ହୁଏ ସମାଜରେ ।
ବୁଦ୍ଧି ବିଚାରି କାର୍ଯ୍ୟକଲେ
ପ୍ରମାଦ ନ ପଡ଼ଇ ହେଳେ ।'

ତେଣୁ ମୁଁ ହଠାତ୍ ଯୁଦ୍ଧକରି ହାରିଗଲେ ହାସ୍ୟାସ୍ପଦ ହେବା କଥା ସେ ହେତୁ ଏ କଥା ଆଗେ ମାଲିକଙ୍କୁ ଜଣାଇ ଆସେ । ଏହା ଭାବି ସେ ଯାଇ କ୍ଷୀରସମୁଦ୍ରରେ ନାରାୟଣଙ୍କୁ ଭେଟିଲେ । ନାରାୟଣ ଗରୁଡ଼ଙ୍କୁ ପ୍ରଣାମ କରୁଥିବାର ଦେଖି ପଚାରିଲେ—ଦେଶର ହାଲ କ'ଣ ଗରୁଡ଼ ?

ଗରୁଡ଼ କରଯୋଡ଼ି କହିଲେ, ଦେଶକଥା କ'ଣ ପଚାରୁଛନ୍ତି ଆଜ୍ଞା ! ଦେଶକୁତ ଦଶଲୋକ ମିଶି ଦଶଦଶାରେ ପକେଇଲେଣି । ପୁରାଣକଥାକୁ ପୁରୁଣା କହିଲେଣି । ନୂଆ ଦେଖି ଭୂଆଁ ବୁଲେଇଚନ୍ତି ପଞ୍ଚାୟତ କେହି କାହା ପାକଳ ବାଛୁନାହାନ୍ତି । ଦେବତା ସବୁ ଗିରି କନ୍ଦରରେ ଲୁଚିଲେଣି । ଠାକୁରଙ୍କୁ ମଣିଷ କରୁଛନ୍ତି ଗଡ଼ିଆ

କୁଠ ପଥର । ଅସୁର ଉପୁରେ ଗାଛ ଖୋଳ ପଶୁଚନ୍ତି । ନାଗ ଲୋକଙ୍କ ଘର ମଲଣି । ଋଷିମାନେ କୋଟି ଗୁଡ଼ ବଶୀକରଣ ଘୋଷୁଛନ୍ତି । ଅଧେ ନାଗ ଆଦ୍ୟମନ୍ତ୍ରର ଚନ୍ଦ୍ରପାଦ ପକେଇଛନ୍ତି । ( 'ନା'କୁ ଚନ୍ଦ୍ରପାଦ ପକେଇଲେ 'ନାଁ' ହୁଏ । କଥାରେ ଅଛି—

'ନ ବୁଝି ଚଳିଲେ ମୁରଖ ଲୋକ
ପଥରକୁ କାଟେ ପାରଶା ପୋକ ।'

ଆପଣେ ଲକ୍ଷ୍ମୀ ସରସ୍ୱତୀ ଦୁହିଁଙ୍କୁ ନେଇ ମଜଳରେ ଶୋଇ ରହିଲେ । ବ୍ରହ୍ମଦେବ ଅସୁର ଯେ ତେଣେ ହେଲୁବୁଲା କାର୍ଯ୍ୟକଲା, ଏଥିକୁ ଉପାୟ ଚିନ୍ତା କରନ୍ତୁ । ଏ କଥାରେ ନାରାୟଣ କହିଲେ ବ୍ରହ୍ମା ବରଦେବା ଲୋକକୁ ଦେଇ ଦିଅନ୍ତି । ଯେତେ ସବୁ ବିପଦ ଘଟେଇବେ ସେ । ବିପଦ ହଟେଇବା ପାଇଁ ମୁଁ । ଯା, ମୁଁ କିଛି ପାରିବ ନାହିଁ । ନାରାୟଣଙ୍କ ରଗିଉଠିବାର ଦେଖି ଲକ୍ଷ୍ମୀ କହିଲେ, ମୁଣ୍ଡ ଗରମ କଲେ କଣ କାର୍ଯ୍ୟ ହେବ ? ବିପଦ ହେଲାଣି ଯେତେ-ବେଳେ ହଟେଇବାକୁ ପଡ଼ିବ । ନାରାୟଣ ଶାନ୍ତହୋଇ କହିଲେ, ତୁମେ 'ମା' ବୋଲି ମନ୍ତ୍ର ରଚି କହିଲ ସିନା ! ଅସୁରଟାର ମୃତ୍ୟୁ ଭେଦ ନ ଜାଣିଲେ କିମିତି ମାରିବା ?

ସେଇଠୁ ସରସ୍ୱତୀ ଛନ୍ଦକାଟି ଖଣ୍ଡେ ପକେଇ ଗଣି କହିଲେ, ବ୍ରହ୍ମା ବ୍ରହ୍ମଦେବ ଅସୁରକୁ ଅମୃତ କୁଣ୍ଡଳମା ଦେଇଛନ୍ତି । ସେ ଯୋଡ଼ାକୁ କାନ୍ଧର ବାହୁମୂଳ ଝଞ୍ଜା ଥିବା କେନ୍ଦ୍ରରେ ଲୁଚେଇ ରଖିଛି । ସେ ଯୋଡ଼ାକୁ କାଢ଼ିନେଲେ ଅସୁର ମରିବ । ହେଲେ ତାକୁ ନବାକୁ ହେଲେ ଭକ୍ତ ଭକ୍ଷକ ଉଭୟ ମିଳିତରୁ ସନ୍ତାନ ହେବା ତାକୁ କାଢ଼ିବା ସମ୍ଭବ ନୁହେଁ । ବାଣୀ ଏପରି କହିବାରୁ ଲକ୍ଷ୍ମୀ ଟିକିଏ ଚିନ୍ତାକରି କହିଲେ—ଗୋଟାଏ କାର୍ଯ୍ୟକର ଗରୁଡ଼ । ମୁଁ ବାପ ଘରକୁ ଯାଉଥିବାବେଳେ ପାତାଳରୁ କୁଳିକ ନାଗର ଝିଅ କେଳାଣିକା

ଆସି ମୋର ସେବା କରିଥିଲ । ମୁଁ ସେବାରେ ଖୁସି ହୋଇ ବର ମାଗିବାରୁ ସେ କହିଥିଲ, ମୁଁ ତୁମର ଦାସୀ । ତୁମ ସ୍ୱାମୀଙ୍କ ଦାସ ସଙ୍ଗରେ ମୋତେ ସଙ୍ଗିନୀ କରିଦେବ । ମୁଁ ହଁ କହିଥିଲି । ଏଇ ବେଳେ ଗରୁଡ଼ ତୁମେ ପାତାଳକୁ ଯାଇ ଅଷ୍ଟଆଡ଼ୀ କେଳଣୀକା ନାଗୁଣୀକୁ ଏକଥା କହ ଯେ ଯୋଡ଼ିଏ ଶ୍ୱେତପକ୍ଷୀ ତା ଗର୍ଭରୁ ଜାତ ହେବ ସେ ପକ୍ଷୀ ଯୋଡ଼ିକ ଆସି ବୃକ୍ଷସର ବାହୁ ଯୋଡ଼ାକୁ ଛିଣ୍ଡେଇ ପକାନ୍ତୁ । ତା' ପରେ ଅମୃତ କୁଣ୍ଡଳମା ଖସି ପଡ଼ିଲେ ତୁମେ ତାକୁ ଉଠାଇ ଆଣିବ । ତାହା ହେଲେ ଅସୁର ମରିବ ।

, ଲକ୍ଷ୍ମୀ ଏ ବ୍ୟବସ୍ଥା କହିବାରୁ ପୁଣି ଗରୁଡ଼ କହିଲେ, ଏତ ବଡ଼ ବିଷମ କଥା । ନାଗୁଣୀଏ ମୋତେ ଦେଖିଲେ ବିକଳରେ ଲୁଚିବେ । ମିଳନ ହେବ କପରି ? ଆଚ୍ଛା ଦେଖାଯାଉ । ଏହା କହି ଗରୁଡ଼ ବିରଜାକ୍ଷେତ୍ର ଆଡ଼େ ଆଗେଇଲେ । ବିରଜା କ୍ଷେତ୍ରରୁ ତ ପାତାଳକୁ ବାଟ ଅଛି । ସେଇବାଟେ ନାଗ କନ୍ୟାମାନେ ଆସି ବୈତରଣୀ ନଦୀ ପଥରେ ଯାଇ ବରୁଣ ଦୁଳଣୀଙ୍କୁ ସେବା କରନ୍ତି । ସେଦିନ ସୁଦଶାବ୍ରତ ହୋଇଥିବାରୁ ନାଗବଧୂମାନେ ଓଷାବ୍ରତ ସେହି ବାଟରେ ଜଗତଙ୍କୁ ପୂଜା କରିବାକୁ ଆସିଥାନ୍ତି । ତାଙ୍କ ସଙ୍ଗରେ କୁଳିକ ନାଗକନ୍ୟା କେଳଣୀକା ଆସିଥାଏ ମଧ୍ୟ । କେଳଣୀକା ଅଠରେ ବର୍ଷର ଯୁବତୀ ହୋଇଥାଏ । ତାକୁ ଚଞ୍ଚୁ ଗରୁଡ଼ 'ଝୁଁ'ମାରି ଉଠାଇ ନେଇଗଲ । ଗରୁଡ଼ଙ୍କୁ ଦେଖି ନାଗକନ୍ୟା ଯିମିତି ବିକଳ ହେଲା ଗରୁଡ଼ କହିଲ, କାନ୍ଦନାହିଁ । ମୋତେ ପତି କରିବାକୁ ତୁମେ ଲକ୍ଷ୍ମୀଙ୍କି ବର ମାଗିବାରୁ ସେ ମୋତେ ପଠାଇଛନ୍ତି । ତୁମେ ମୋର ପତ୍ନୀ ହେଲ । ମୁଁ ତୁମର ପତି । ଏହା କହି ଗରୁଡ଼ ଫୁଲମାଳଦେଇ ଗନ୍ଧର୍ବ ମତରେ ବିଭା ହୋଇ କେଳଣୀକା ସାଙ୍ଗରେ ବିହାର କଲ । ସେହି ବିହାରରେ କେଳଣୀକା ଗର୍ଭ ହେଲା ତାପରେ କେଳଣୀକାକୁ ଗରୁଡ଼ ନେଇ କୁଳିକ ନାଗଘରେ ଛାଡ଼ି ସେ ଜନ୍ମ ଦେବା ଯୋଡ଼ିଏ

ଶ୍ୟେନପକ୍ଷୀଙ୍କି ସେ ଯେନ ଆସିଲା । କେଳଶୀଳା କହିଲା, ମୋତେ ନ ନେଇ ବାପଘରେ ଛାଡ଼ିଯାଉଛ । କଥାରେ କହନ୍ତି ପର ବୋଝା ନମ୍ବର ଝିଅ, ଯିଏ ବାପଘରେ ଛାଡ଼େ ନାହିଁ ।' ତୁମେ ମୋତେ ଛାଡ଼ିଯିବ କେମିତି ? ଗରୁଡ଼ କହିଲା, ସବୁ କାର୍ଯ୍ୟ ଛାଡ଼ି ଆଗେ ଦେବକାର୍ଯ୍ୟ କରିବାକୁ ଶାସ୍ତ୍ର କହୁଛି । ମୁଁ ଆଗେ ଦେବକାର୍ଯ୍ୟ କରିସାରେ ତା' ପରେ ଯୋଉ କଥା । ଏହା କହି ସେ ପିଲାଙ୍କୁ ନେଇ ଯାଇ ପ୍ରହେଷ୍ଟ ଅସୁରର ରାଜଧାନୀ ପ୍ରହୁତ ଦେଶରେ ପହଞ୍ଚି ସାରି ରଡ଼ି ଦେଇ ପ୍ରହେଷ୍ଟକୁ ଯୁଦ୍ଧପାଇଁ ଡାକଦେଲା । ପ୍ରହେଷ୍ଟ ସ୍ୱବଳ ଦେବଲୋକ, ନାଗଲୋକ, ଗନ୍ଧର୍ବଲୋକ, ମର୍ତ୍ତ୍ୟଲୋକ ସବୁ ଜିଣିଥିଲା । ବାକିଥିଲା ପକ୍ଷୀଲୋକ, ସେଇଟା ଏବେ ଅଧିକାର ହେବ ଏହା ଭାବି ସେ ନଶ ମୋଡ଼ିଦେଇ ଯେମିତି ଯୁଦ୍ଧକୁ ଆସିଛି, ଗରୁଡ଼ ଗୋଟାଏ ପକ୍ଷ ଆଘାତରେ ଝାମ୍ପଟା ମାରି ତାକୁ ତଳେ ପକାଇ ଦେଲା ।

ପ୍ରହେଷ୍ଟ ପଡ଼ିବାରୁ ବାଜ ପକ୍ଷୀ ଯୋଡ଼ିକ ଲମ୍ଫି ଆସି ତା ଦୁଇ ଭୁଜକୁ ଛିଡ଼ାଇ ନେଇଗଲେ । ହାତ ଛିଡ଼ିଯିବାରୁ ଅମୃତ କୁଣ୍ଡଳମା ଯୋଡ଼ିକ ଖସି ପଡ଼ିଲା । ଏଇ ସୁଯୋଗରେ ଗରୁଡ଼ ସେ ଯୋଡ଼ିକୁ ନେଇ ବିଷ୍ଣୁଙ୍କ ପାଖରେ ଦେଇ ଆସି ଚଞ୍ଚୁ ଓ ନଖରେ ପ୍ରହେଷ୍ଟର ଦେହଟାକୁ ଛିନ୍ନ ଭିନ୍ନ କରିଦେବାରୁ ଅସୁରଟା ମରି ପର୍ବତ ଆକାରରେ ପଡ଼ିଗଲା । ତାହା ଦେଖି ଦେବତାମାନେ ସୁମେରୁ ଶିଖରରୁ ଆସି ପ୍ରହେଷ୍ଟ ଅସୁର ଦେହଟାକୁ ଅକର୍ମଶୀଳା କରିଦେଲେ । ଦେବତାଙ୍କ ବରରେ ସେହି ବାଜପକ୍ଷୀ ଯୋଡ଼ିକ ସେହି ପାହାଡ଼ କୋଟରେ ରହିଛନ୍ତି । ତାଙ୍କୁ ଦେବତା ଅମର ବର ଦେଇ ସେଠାରେ ପକ୍ଷୀଧାମ ବସାଇଛନ୍ତି । ସେହି ଯୁଗରୁ ସେବକ-ବଂଶ ତାଙ୍କୁ ଖେଚୁଡ଼ି ଘୃତ ଗନ୍ଧ ଦେଉଛନ୍ତି । ପୁରୁଷାନୁକ୍ରମେ ଏହିପରି ଚାଲିଆସୁଛି । ବୁଝିଲୁଟି ଅବୋଲକରା ! ତୁ ଯେଉଁ

ପାହାଡ଼ ପକ୍ଷୀ ଦେଖି ଆସିଲୁ ସେଇ ହେତୁରୁ ସେ ଗରୁଡ଼ଙ୍କ ପୁଅ ଶ୍ୟେନପକ୍ଷୀ ଓ ପ୍ରଚେଷ୍ଟ ଅସୁରର ଦେହ ପଥର । ଏ ଗପଟି ମୁଁ ଉମାକାନ୍ତ ସାରଙ୍କ ଠାରୁ ଶୁଣିଥିଲି । ଏହା କହି ଗୋସେଇଁ ଶୋଇବାକୁ ଗଲେ ।



## ପଞ୍ଚଲିଙ୍ଗ ଶିବ କଥା

ପକ୍ଷୀଧାମ କଥା ଶୁଣି ଅବୋଲକରା ବୋକସ୍କୁ ନେଇ ଖୁସି ହୋଇ ଯାଉଥାଏ । କିଛି ବାଟ ଗିବାରୁ ପୂର୍ବଘାଟ ପାହାଡ଼ ତଳେ ଗୋଟିଏ ନଦୀକୂଳରେ ଧର୍ମଶାଳାଟିଏ ଦେଖିବାକୁ ମିଳିଲା । ଗୋସେଇଁ କହିଲେ, ଅବୋଲକରା ! ଆଜି ଏଇ ଧର୍ମଶାଳାରେ ରହିବା । ତୁ ଟଙ୍କାଟିଏ ନେଇ କିଛି ଡାଲି ଚାଉଳ କିଣିଆଣେ । ଗଣ୍ଡାଏ ସେପେଇ କରି ଖାଇଦେବା । ସେଇଠୁ ଅବୋଲକରା ଟଙ୍କା-ଟିଏ ନେଇ ଅନେକ ବୁଲାବୁଲି କରି ଚାଉଳ ଡାଲି ଆଣି ଧୁମ୍ କରି ପକାଇ ଦେଲା । ସେଇ ଶବ୍ଦ ପାଇ ଗୋସେଇଁଙ୍କ ଧ୍ୟାନ ଭାଙ୍ଗିଗଲା ।

ଅବୋଲକରାକୁ ଏପରି କରିବାର ଦେଖି ଗୋସେଇଁ ପଚାରିଲେ କିରେ କ'ଣ ହେଲାକି ? ଅବୋଲକରା କହିଲା, ଗୋସେଇଁ ! ମୁଁ ବଜାରକୁ ଯାଇ ଦେଖିଲି ଲୋକମାନେ ପାହାଡ଼ ଉପରକୁ ପିମ୍ପୁଡ଼ି ନାଳପରି ଚଢ଼ୁଛନ୍ତି । ମୁଁ ବି ତାଙ୍କ ସଙ୍ଗରେ ଗଲି । ପାହାଡ଼ ଉପରକୁ ଯାଇ ଦେଖିଲି ସେଠାରେ ପାଞ୍ଚୋଟି ଶିବଲିଙ୍ଗ ଏକ ସଙ୍ଗରେ ଅଛି । ବହୁତ ଲୋକ ତାଙ୍କୁ ପୂଜା କରୁଛନ୍ତି । ଏହାର କାରଣ ନ କହିଲେ ଆଜି ମୁଁ ଖିବ ନାହିଁ । ଗୋସେଇଁ କହିଲେ—ଆଚ୍ଛା ପଚା କମ୍ବଳ ଟେକ ମଥା, ଶୁଣ ଅବୋଲକରା ସେ କଥା । ଅବୋଲକରା ନଦୀରୁ ସ୍ନାନ କରି ଆସିବାରୁ ଗୋସେଇଁ କହିଲେ ।

ବହୁଯୁଗ ଆଗେ ମୁଚୁକୁନ୍ଦ ବୋଲି ଜଣେ ରାଜା ଥିଲେ । ତାଙ୍କର ଦମୟନ୍ତୀ ନାମରେ ଗୋଟିଏ କନ୍ୟା ଥିଲା । ତା ବାପା ରାଜ୍ୟ ସମ୍ପଦ ଛାଡ଼ି ସନ୍ନ୍ୟାସୀ ହୋଇଯିବା ବେଳକୁ ସେ ୯ମାସ ମାତୃଗର୍ଭରେ ଥାଏ । ତମ୍! ବଡ଼ହୋଇ ମା'ଙ୍କ ଠାରୁ ଶୁଣିଲା, ପିତା ମୁଚୁକୁନ୍ଦ ତପସ୍ୟା କରିବାକୁ ବନସ୍ତକୁ ଯାଇଛନ୍ତି । ସେଇଠୁ ସେ ତା'ର ସୁନ୍ଦରୀ ସଖୀଙ୍କି ନେଇ ପିତୃଦର୍ଶନ କରିବାକୁ ବାହାରିଲା । ସାଙ୍ଗ ହେଲେ ମନ୍ତ୍ରୀ ଝିଅ ପାର୍ବତୀ, ପୁରୋହିତ ଝିଅ ଗୋପା, ଗୁରୁ ଦେବଙ୍କ ଝିଅ ପଦ୍ମଲୋଚନା, ସାମନ୍ତଙ୍କ ଝିଅ କୁସୁମ । ସେମାନେ ରାଜା ଝିଅର ସାଙ୍ଗ, ଘୋଡ଼ା ଚଢ଼ିବାଠାରୁ ଖଣ୍ଡା ଖେଳିବାଯାଏ ଶିଖିଛନ୍ତି । କାହାକୁ ଡରଭୟ ନାହିଁ । ବଣେ ବଣେ ବୁଲି ମୁଚୁକୁନ୍ଦଙ୍କୁ ଖୋଜୁଛନ୍ତି । ହେଲେ ଠିକଣା ନାହିଁ କି ନମ୍ବର ନାହିଁ, ବଣ ପାହାଡ଼ରେ କେମିତି ପାଇବେ । ଯା ହେଉ ଖୋଜି ଖୋଜି ବୁଲି ବୁଲି ଆସି ପଦ୍ମତୋଳା ପାହାଡ଼ରେ ପହଞ୍ଚିଲେ ।

ସେ ପାହାଡ଼ଟା ମାନଗଡ଼ ରାଜ୍ୟରେ ପଡ଼େ । ମାନଗଡ଼ ରଜାଙ୍କ ଦୂତ ଆସି ରଜାଙ୍କୁ କହିଲା, ହଜୁର! କୁଆଡ଼ୁ ପାଞ୍ଚଟି ସୁନ୍ଦରୀ ଯୁବତୀ ଆସି ରାଜ୍ୟ ପାହାଡ଼ରେ ବୁଲୁଛନ୍ତି । ପରିଚୟ ପଚାରିବାରୁ କହିଲେ, ଆମେ ଦୂରରୁ ଆସିଛୁ । ଏକଥା ଶୁଣି ରାଜା ଭାବିଲେ ସର୍ବନାଶ । ଯୁବତୀ କନ୍ୟା ଯଦି ସ୍ୱେଚ୍ଛାଚାରିଣୀ ହୁଏ, ତା ହେଲେ ସମାଜ ଶୃଙ୍ଖଳାକୁ ମାନେ ନାହିଁ । ସେ ହୋଇଥିବ ସୁଧମାନଙ୍କୁ କହିଲେ ତାଙ୍କର ସନ୍ଧାନ ବୁଝି ଦେଖ, ଯଦି ସେମାନେ ବିବାହ କରିଥାନ୍ତି ତାହାହେଲେ ତାଙ୍କୁ ଛୁଇଁବ ନାହିଁ । ଯଦି ଅବିବାହିତ ଥାନ୍ତି ତାଙ୍କୁ ଧରି ଆଣିବ । ଆମେ ତାଙ୍କୁ ଏଠାରେ ପାଣିଗ୍ରହଣ କରିଦେବା, ନ ହେଲେ ଯୁବତୀ କନ୍ୟା ସ୍ୱେଚ୍ଛାଚାରିଣୀ ହେଲେ ସମାଜରେ କଳଙ୍କ ଲଗାନ୍ତି । ଏହାଶୁଣି ସୁଧମାନେ ତାଙ୍କ ସନ୍ଧାନରେ ବାହାରିଲେ ।

ଏଣେ ଦମୟନ୍ତୀ ସ୍ଵର ସଖୀଙ୍କି ନେଇ ଶୁନଗ୍ରେଟ ପାହାଡ଼ ପାରହୋଇ ଯାଇ ଦେବଗିରି ପାହାଡ଼ ଶାଖାରେ ବୁଲୁଛୁ । ଏଇବେଳେ ଗୋଟିଏ ସାନ୍ତାକୁଣୀ ବୁଢ଼ୀ ତାଙ୍କୁ ଦେଖି ଆଖି ପଚପଚ କରି ଅନେଇବାରୁ ପାବଣ୍ଡ ଆସି ତାକୁ ପଚ୍ଛରିଲା, କହେ ବୁଢ଼ୀ କ'ଣ ଦେଖୁଚୁ । ବୁଢ଼ୀ କହିଲା, ଅନେ ତୁମେ ସେଇ ଝିଅମା କ'ଣ ଯାହା କଥା କହି ରଜା ଦୂତ ପଠାଉଥିଲେ । ଗୋପା ପଚ୍ଛରିଲେ, କ'ଣ ଦୂତ ପଠାଇଥିଲେ ରଜା । ବୁଢ଼ୀ କହିଲା, କହିଥିଲେ ଝିଅଗୁଣ୍ଡଟା ଯଦି ବାହା ହୋଇଥାନ୍ତି, ତାହାଲେ ତାଙ୍କୁ ଛୁଇଁବ ନାହିଁ । ଅଭିଆଡ଼ୀ ହୋଇଥିଲେ ଧରି ଆଣିବ । ତାଙ୍କୁ ବାହା କରେଇଦବା । ସତରେ ତମେ ତ ସେଇ ଝିଅ ହୋଇଥିବ । ଆଲୋ ତମେ ବାହା ହୋଇଚ ନା ଅଭିଆଡ଼ୀ । ଗୋପା କହିଲା ଆମେ ବାହା ହୋଇଥିଲେ ଆମ ସିନ୍ଥିରେ କଣ ସିନ୍ଦୂର ନଥାନ୍ତା ! ଆମେ କୁମାରୀ ଅଛୁ । ବୁଢ଼ୀ ଖୁସି ହୋଇ କହିଲା, ହଦେ କ ହ ହନ ଭିତରେ ତା' ହେଲେ ରାଣୀ ହୋଇଯିବ । ଏହା କହି ବୁଢ଼ୀ ତା ବାଟରେ ଚାଲିଗଲା ।

ବୁଢ଼ୀଠାରୁ ଖବର ପାଇ ଗୋପା ଦମୟନ୍ତୀ ଆଦି ସଖୀମାନେ ବଡ଼ ଭାବନାରେ ପଡ଼ିଲେ । ଦମୟନ୍ତୀ କହିଲା, ଗୋପା ! ଆମେ ସିନା ପାଞ୍ଚ ଜଣ ପୁରୁଷଠାରୁ ନିଜକୁ ବଞ୍ଚେଇ ପାରିବା । ରଜା ଯଦି ସେନାବଳ ଦେଇ ଧରିନେବ କରିବା କଣ । ପାବଣ୍ଡ କହିଲା, ଖାଲି କଣ ମୁହଁରେ ପଡ଼ିଛୁ ଯେ ଆମକୁ ନେଇ ବାହା ହୋଇପଡ଼ିବ । କଥାରେ ଅଛି—"ମନର ସଙ୍ଗୀ ଦେହରେ ନାହିଁ, ସୀତାଙ୍କୁ ରାବଣ ନେଲା ହେବାଇ । ଦ୍ରୌପଦୀ ଭାବିଲେ କର୍ଣ୍ଣଙ୍କୁ ବରି, ଚନ୍ଦ୍ରଗୁପ୍ତ ଆଗେ ପଡ଼ିଲେ ଧରି ।" ଜବରଦସ୍ତ ନେଲେ କଣ ଆମ ମନ ପାଇବ ସେ ଦମୟନ୍ତୀ କହିଲା, ସେ କଥା ଛାଡ଼ । ଆମେ ଯେତେ ଗୋଟାଇବା ସେତ ତୋଟାମୂଲରୁ କ'ଣ ମିଳିବ । ଚାଲ ଉପରୁ ଉପରକୁ, ପାହାଡ଼େ

ପାହାଡ଼େ ପଳାଇବା । କଥାଟା ସମସ୍ତଙ୍କ ମନକୁ ପାଇବାରୁ ସମସ୍ତେ ପାହାଡ଼ ପାହାଡ଼େ ଉପରକୁ ଉଠିଲେ ।

ରାଜାଘର ଝିଅ ବଜାରରେ ବୁଲି ଢଉଭସ୍ମ ଲାଗୁଛି ! ପାହାଡ଼ର ଉପରକୁ ଦୁଇ ହଜାର ହାତ ଉଠିବା ପରେ ଦେଖିଲେ ଜଣେ ସାଧୁ ଧ୍ୟାନ ମଗ୍ନ ହୋଇ ବସିଛନ୍ତି । ପାଖରେ କୁଳୁକୁଳୁ ହୋଇ ଝରଣାଟିଏ ବହି ଯାଉଚି । ପାଣି ବଡ଼ ନିର୍ମଳ । ତାକୁ ଦେଖି ଝିଅ ପାଞ୍ଚଟାର ଭରସା ହେଲା । ସେମାନେ ସେଇଠି ଗୋଡ଼ହାତ ଧୋଇ ଆସି ବସି ରହିଲେ । କେତେବେଳ ପରେ ସାଧୁଙ୍କର ଧ୍ୟାନ ଭଙ୍ଗ ହେବାରୁ ଏମାନଙ୍କୁ ପ୍ରମାଣ କରିବାର ଦେଖି ପଚାରିଲେ ଭଦ୍ରେ ! ତୁମେମାନେ କିଏ ? କୁଆଡ଼ୁ ଆସି ଏଇ ନିର୍ଜନ ବନରେ ବହିରୁଛ । ଏକଥା ଶୁଣି ଗୋପା ଦୟାବତୀକୁ ଦେଖାଇ କହିଲା, ଏ ହେଉଚନ୍ତି ରାଜା ମୁଚୁକୁନ୍ଦଙ୍କର କନ୍ୟା । ନାଁ ଦୟାବତୀ ସେ ତାଙ୍କର ପିତା ରାଜର୍ଷି ମୁଚୁକୁନ୍ଦଙ୍କ ଦର୍ଶନ କରିବାକୁ ଆସିଛନ୍ତି । ଆମେ ତାଙ୍କ ସଖୀ ଚାରିଜଣ । ଆପଣ ଆମକୁ କୁହନ୍ତୁ—ରାଜର୍ଷି ମୁଚୁକୁନ୍ଦ କେଉଁଠି ତପସ୍ୟା କରୁଛନ୍ତି । ଆମେ ତାଙ୍କ ପାଖକୁ ଯିବୁ । ଏହାଶୁଣି ସନ୍ନ୍ୟାସୀ ଟିକିଏ ଭାବି କହିଲେ, ବୃଥାଶ୍ରମ କରି ବୁଲିଲ ମା । ଆଜକୁ ଏକମାସ ହେଲା ଋଷି ମୁଚୁକୁନ୍ଦଙ୍କ ନିର୍ବାଣ ପ୍ରାପ୍ତି ହୋଇଛି । ଆମେ ତାଙ୍କୁ ଏହି ଶିଳାଖଣ୍ଡ ପାହାଡ଼ର ଦକ୍ଷିଣ ବଗରେ ସମାଧି ଦେଇ ଆସିଛୁ । ମୁଁ ତାଙ୍କର ଜଣେ ଶିଷ୍ୟ । ମୋ ନାମ ଆରଣ୍ୟକ । ଯଦି ତୁମେମାନେ ଏତେ କଷ୍ଟ ସହି ଆସିଛ ତେବେ ତାଙ୍କ ସମାଧିରେ ପୁଷ୍ପାର୍ଘ୍ୟ ଦେଇଯାଅ । ଚାଲ ମୁଁ ତୁମକୁ ତାଙ୍କ ସମାଧି ଦେଖାଇ ଦେବି । ଏହା କହି ଆରଣ୍ୟକ ଏ ରାଜକନ୍ୟା ସହ ଦୟାବତୀକ ନେଇ ମୁଚୁକୁନ୍ଦଙ୍କ ସମାଧି ଦେଖାଇ ଦେଲେ ।

ଦୟାବତୀ ପିତାଙ୍କ ସମାଧି ଦେଖି ବହୁତ କାନ୍ଦିଲା । ତା ପରେ ସଖୀମାନଙ୍କୁ କହିଲା, ଏହିଠାରେ କୁଟୀରବନ ରହି ପିତାଙ୍କ

ସମାଧିର ସେବା କରିବା । ତାଙ୍କ ଇଚ୍ଛା ଜାଣି ଆରଣ୍ୟକ ତାଙ୍କୁ ଗୋଟିଏ ଗୁମ୍ଫା ଦେଖାଇଦେଇ ଗଲେ । ଏମାନେ ଫଳ ମୂଳ ଖାଇ ସେଠାରେ ରହିଥାନ୍ତି । ଏଣେ ରାଜାଙ୍କର ଦୂତମାନେ ସନ୍ଧାନ ପାଇଲେ, ଏହି ନିକଟରେ ସେ ରାଜକନ୍ୟା ରହିଛନ୍ତି । ତହୁଁ ସେମାନେ ସନ୍ଧାନକରି ବୁଝିଲେ ଯେ ରାଜକନ୍ୟା ଅବରୁଦ୍ଧା ହେଲେ ସେମାନେ ଏତେ ବଳବାନ ଯୁବକ ଯେ ପାଞ୍ଚଦଶ ଗୁଣ୍ଡା ମଧ୍ୟଙ୍କୁ ବି ଅଣ୍ଡାକରି ଦେଇ ପାରନ୍ତି । ଦୂତମାନେ ରାଜାଙ୍କୁ ଯାଇ ପରିଚୟ ପତ୍ର ନେଇଉଠିଗଲେ । ସତକୁ ସତ ରଜା ବାଦାନୁବାଦେ ସେନା ସୈନ୍ୟ ନେଇ ପାହାଡ଼ଟାକୁ ଘେରାଉ କରିଦେଲେ ।

ଏଣେ ଦସ୍ୟୁବଣ୍ଟ ଯେମିତି ଖବର ପାଇଲା ରଜା ସୈନ୍ୟ ଘେରେଇ ରଖିଛନ୍ତି, ସେଠୁ ସେ ପ୍ରତିଜ୍ଞା କଲା—ସଖି ! ଗ୍ରାମ ପାଖରେ ସାନ୍ତାଳ, ଭୂମିଜ, ଶୂଦ୍ର, ବ୍ରାହ୍ମଣ, ବୁଢ଼ା ଯୁବକ ଯାହାକୁ ପାଇବ ଧରିନେଇ ଆସିବ ମୁଁ ତାଙ୍କୁଇ ବଳିଦେଇ ମୋ ସଖିଙ୍କୁ ରକ୍ଷା କରିବ । ଏକଥା ଶୁଣି ଗୋପା ଜଉକାମୂର୍ତ୍ତି କହିଲା, ଏପରି ପଣ କଲ କାହିଁକି କେମା ! ଆମେ ଜାଣୁ ତୁମେ ସଖି । ପତିବ୍ରତା ତୁମକୁ କେହି ଛୁଇଁ ନପାରେ ।

ଶାସ୍ତ୍ର କହୁଛି—

"ଲୁବ୍ଧୟାବର୍ତ୍ତଂ ରକ୍ଷଶୁରଣଶ୍ଚଂ ପ୍ରବଳ ଶାର୍ଦ୍ଦୁଳ ନୃଖ ଦନ୍ତସ୍ୟ ପତିବ୍ରତାୟାଃ କୁଚ୍ଚଧରସ୍ପର୍ଶଂ, ଅନ୍ୟାନ ଦାଖ୍ୟନ୍ ମୃତାନ୍ତରେ ଚ" । ଶ୍ଳୋକର ଅର୍ଥ, ସାପର ଅସ୍ତ୍ର ତ୍ରଦଳ ବା ଶାର୍ଦ୍ଦୁଳର ନଖ ଦନ୍ତ, ସଖି ନାରୀର କୁଚ ଅଧର ସ୍ପର୍ଶ । ମରିଗଲେ ଅନ୍ୟଲୋକ ପାଇପାରେ, ବଞ୍ଚିଥିଲେ ନୁହେଁ । ତୁମେ ଏପରି ପକ୍ଷ କଲ କାହିଁକି ? ଦସ୍ୟୁବଣ୍ଟ କହିଲା ନା ସଖି ! ଯାହା ମୁହଁରୁ ବାହାରିଛି ତାହା ହେବ । ତୁମେ ରାତି ପାହିଲେ ଯାହାକୁ ଦେଖିବ—ଜାତି ଅଜାତି ରୂପଗୁଣ

କବାର ସେଇ ପୁରୁଷକୁ ଦେଖ ଆସିବ । ତାହା କହି ସେ ଗୁମ୍ଫାକୁ ଯାଇ ଏକାଗ୍ର ଧ୍ୟାନକଲ ।

ସତୀ ପ୍ରତିଜ୍ଞା ଟିକଏ ଟଳିବାର ତ ନୁହେଁ । ସତୀର ଶକ୍ତି ଅସୀମ କାଳଜୟୀ ଶିବ ମଧ୍ୟ କାଳୀ ପାଖରେ ଗ୍ଳତ ପଡେଇ ପଡ଼ିଛନ୍ତି । ସେଥିପାଇଁ କହନ୍ତି—"ନୁହନ୍ତି ସାମାନ୍ୟ ଆମ ଦୁଲଣୀ, କାଳମାତା ରୂପେ ଘଟେ ଘରଣୀ । ବାଣୀରୂପେ ବିଦ୍ୟା ଦାସୁ ମା ସେହି ଦୁର୍ଗତିକୁ ଦୁର୍ଗାରୂପେ ନାଶଇ । ରମାରୂପେ ଘରେ ସନ୍ତାନ ପୋଷି, କାଳରୂପେ ପାରେ ରକତ ଶୋଷି ।" ସେହି ସତୀ ପ୍ରତିଜ୍ଞା କରିବାରୁ ପବନ ଆଉ ବହିଲ ନାହିଁ, ସବୁକୁ ପବନ ବନା ଜୀବନ ଚେଳବାକୁ ବସିଲେ । ନିଃଶ୍ୱାସ ବନ୍ଦ ହେବାରୁ ଇନ୍ଦ୍ରର ପେଟ ଫୁଲେଇ ଛଟ୍‌ଛଟ୍ ହେବାକୁ ଲଗିଲ । ଶଚୀ କହିଲେ, ମରିଗଲି ମରିଗଲି, ପେଟଟା ଫୁଲେଇ ଫାଟିଗଲ ଫାଟିଗଲ । ଉର୍ବଶୀ ଡାକଲ ଗୋଲମରିଚ ଗରମପାଣି । ମେନକା ଡାକଲ ଜୁଆଣି । ଇନ୍ଦ୍ରଙ୍କର ତ ବଳେ ଅସମ୍ମାନ, ପତ୍ନୀ କହୁଚ ପୁଅସମ୍ମାନ ଦିଅ । ସେ ଘରର ଅବସ୍ଥା ଏପରି ଦେଖି ବୃହସ୍ପତିଙ୍କି ପଚାରିଲେ ଗୁରୁଦେବ ଏପରି କାହିଁକି ହେଲା ? ଶଚୀକି ତ ଦବେଇ ନଦେଲେ ରଖେଇ ଦବନାହିଁ । ବୃହସ୍ପତି ଗଣନା କରି କହିଲେ, ଶିବଛଡ଼ା ଗତିନାହିଁ । କାରଣ ମୂଚୁକୁନ୍ଦକନ୍ୟା ଦସ୍ତାବତୀ ପଣ କରିଛି, ବଞ୍ଚପାଇଲେ ଯେଉଁ ପୁରୁଷକୁ ଦେଖିବ ତାକୁଇ ସେ ବରହେବ । ସେଟା ସାନ୍ତାଳଭୂମିର ଦେଶ । ଯଦି କେହି ଜଣେ ଦେଇଥିବୁ ମିଳେ ତ ସର୍ବନାଶ ହେବ । ତେଣୁ ଶିବଙ୍କୁ ଜଣେଇବା ଉଚିତ ।

ଇନ୍ଦ୍ର ଗୁରୁଙ୍କ କଥା ଶୁଣି ପେଟଟା ଚିପି ଚିପି ଯାଇ ନାରଦଙ୍କ ପାଖରେ ପହଞ୍ଚିଲେ । ତାଙ୍କୁ କହିଲେ, ଦେବର୍ଷି ! ଟିକଏ ଯାଇ ଶିବଙ୍କୁ ଖବରଟା ଦିଅ । ନହେଲେ ଶଚୀ ଯେମିତି ପାଟିଗୋଳ

କରୁଛ, ମୋ ହଜାରେ ଆଖିକୁ ନିଦ ଆସିବ ନାହିଁ । ନାରଦ କହିଲେ, ହଉ ଯାଉଛି ଦେଖେଁ । ଏହା କହି ବସ ଯାଇଁ କୈଳାସ ଗିରିରେ ଦେଖିନ୍ତିବେଳକୁ ଶିବ ଧୂତୁରା ଭାଙ୍ଗ ପଣା ଦଶବାଣ୍ଡି ପିଇ ଏକବାରେ ମସ୍ତ ହୋଇଛନ୍ତି । ଜଟାଯାକରେ ଅସରପା ଫର ଫର ହୋଇ ବୁଲୁଛନ୍ତି । ତାଙ୍କ ଅବସ୍ଥା ଦେଖି ନାରଦ କହିଲେ-ହେଃ, କୋଇଁଠା ଏକବାରେ ଅଧପାତକୁ ଯିବାକୁ ବସିଲଣି । ଆରେ ହେ ଭୋଳା ବେହିଦୋ ! କେତେ କାଳ ପିଇନ୍ ବରେ ? ଆରେ, ଜଣେ ସେ ମୁଚୁକୁନ୍ଦ ରଜାଟିଏ ଗଣ୍ଡକର ବଣରେ ବସିଛି । ଏଣେ ପବନ ବନ୍ଦ ହେବାରୁ ପ୍ରାଣୀଙ୍କର ଜୀବନ ଯିବାକୁ ବସିଛି ସେଥିପାଇଁ କ'ଣ ଭାବୁଛ । ଶିବ ନିଶା ଘୋରରେ କହିଲେ, ଆଏଁ କ'ଣ କହିଲ ? ନାରଦ କହିଲେ, ଏଃ ହ୍ୟାପୋ ଏତେ ପିଇଛ ଯେ ପାଟିରୁ ଦୁର୍ଗନ୍ଧ ବାହାରୁଛି । ଆଜ୍ଞା, ଇନ୍ଦ୍ର କହୁଛନ୍ତି ତୁମେ ଯାଇ ତା'ର ପ୍ରତିକାର କରିବ । ଏହା ଶୁଣି ଶିବ କହିଲେ, ଆଜ୍ଞା ଯାଅ । ନାରଦ ମୁହଁରେ ଲୁମାଇ ଯାକ ଗଳେଇଲେ । ଶିବ ଯାଇ ଉମାଙ୍କୁ କହିଲେ, ହେ ଶୁଣୁଚ । ଘରଦୁଆର ପିଲା ପିଲିଙ୍କୁ ସମ୍ଭାଳଥା, ମୁଁ ମର୍ତ୍ତ୍ୟ ଭୂମିକି ଚାଲିଲି । ଏହା କହି ବୁଢ଼ା ଷଣ୍ଢରେ ଡେଇଁ ଗୋଟିଏ ଗୋଟିଏ ଆସି ତେନ୍ତଗିରି ଶାଖା ଗଛରେ ଓହ୍ଲାଇଲେ । ସେଠି ଷଣ୍ଢଟାକୁ ଗୁଡ଼ୁଦେଇ କହିଲେ—ଏଇଠି ଚରବୁଲ କରୁଥା ତୁ ମୁଁ ଦେଖେଁ ଲୋକେ ସବୁ କ'ଣ ଉସ୍କୁର କରୁଛନ୍ତି । ଏହା କହି ସେ ଗୁମ୍ଫା ଆଡ଼କୁ ଆଗେଇଲେ ।

ରାତି ପାହିଲା ବେଳକୁ ଗୁମ୍ଫା ମୁହଁରେ ଗୋଟିଏ ଏକଜାମିଆ ରୋଗୀ ପଡ଼ିଛି ! ତା' ର ଗୋଡ଼ରେ ଜନା ଗୁଡ଼ା ହୋଇଛି । ଆଙ୍ଗୁଳାର ଘା ଉଠି । ପୂଜ ଗୁଡ଼ାକ ଦେହଯାକ ବାଲି ବାଲି । ମାଛି ଭଣ ଭଣ ହେଉଛନ୍ତି । ଦୁର୍ଗନ୍ଧରେ ପାଖ ମାଡ଼ି ହଉନାହିଁ । ବଡ଼ଲୋକରୁ ଲୋପା, କୁସୁମ ଦଦେଁ ଗୁମ୍ଫା ମୁହଁକୁ

କାହାର ଦେଖିଲା ବେଳକୁ କୋଢ଼ିଆଟା ପଡ଼ୁଚି । କୁସୁମ ତ ଦେଖି ଓକ ଓକ ଓକାଉ ଗୁଡ଼ିଲା । ଗୋପା ପଣତ କାନଟା ନାକରେ ଯାକିଦେଇ ଦେଖିଲାବେଳକୁ କୋଢ଼ିଆଟାଏ । ମୁହଁରେ ହାତେ ଲେଖା ଥୋଡ଼ ବଢ଼ିଚି । ଜଟାରେ ଉକୁଣିପୋକ ସାଲୁ ସାଲୁହୋଇ ବୁଲୁଛନ୍ତି । ସେଇଠୁ ସେ ଦୁହେଁ ଲେଉଟିଯାଇ ଦୟାବନ୍ତୀଙ୍କ କୋଢ଼ିଆ କଥା ଜଣାଇଲେ ।

ଦୟାବନ୍ତୀ ପଣକରିଛି, ନାଗଙ୍କୁ ବଞ୍ଚାଇବା ଲାଗି ଯେଉଁ ପୁରୁଷକୁ ଆଗେ ଦେଖିବ ତାକୁଇ ସେ ବାହାହେବ । ସେଥିପାଇଁ କହିଲା ସେ କୋଢ଼ିଆଟିକି ଗୁମ୍ଫା ଭିତରକୁ ଧରିଆଣ । ତା କଥା ଶୁଣି କୁସୁମ କହିଲା, ଏ କି ଅଦ୍ଭୁତ ଜେମା ! ସେ'ଟାକୁ ଛୁଇଁବ କିଏ ? ଆମେ ଜାଣୁ ଜାଣୁ କୁଷ୍ଠ ରୋଗୀଟାକୁ ଧରିବୁନା । ତା ଛଡ଼ା ଘା'ଗୁଡ଼ାକ ଯେମିତି ଗନ୍ଧଉଚି ସେଥିରେ ପୋକ ପଡ଼ିଲେଣି କି କ'ଣ ? ଆମେ ସେ'ଟାକୁ ଛୁଇଁବୁ ନାହିଁ । ଗୋପା କହିଲା, ସତରେ ଜେମା ! ତୁମେ ସେ'ଟାକୁ ବାହାହୋଇ କ'ଣ କରିବ ? କୁସୁମ କହିଲା, ଆଗୋ ! ସେଟାର ଯୋଉ ଥୋଡ଼ ଛୁଡ଼ ବଢ଼ିଚି ସେଇ ମୁହଁଟାରେ ମୁହଁଯୋଡ଼ ଦେବାକୁ ତୁମ ମନ କମିତି ବାସୁଚି । ହେଲେ କବି ଲେଖିଛନ୍ତି—ଦେଖ ଖଇକ ମାଛ ଅଛୁ ଅଟଳେ, ଶତ କୁଣ୍ଡରେ ସଞ୍ଚ ମଟକ ଟଳେ ? ସେହିପ୍ରକାର ଯିଏ ଯେତେ ପ୍ରକାର କହିଲେ ମଧ୍ୟ ଦୟାବନ୍ତୀ କାହାର କଥା ଶୁଣିଲା ନାହିଁ । ବରଂ ବିରକ୍ତ ହୋଇ କହିଲା—ମୁଁ ଯେତେବେଳେ ପ୍ରତିଜ୍ଞା କରିଚି ମୋ ବସ୍ତଦକୁ କୋଢ଼ିଆ, ବଉଆ ଯାହାହେଉ ପଛେ, ତାକୁଇ ମୁଁ ବାହାହେବ ଏହାକହି ସେ ପଣତକାନଟା କମରରେ ଭିଡ଼ିଦେଇଯାଇ କୋଢ଼ିଆଟାକୁ ଉଠାଇଲେ । ତାକୁ ବା ମାଇପି, ଲୋକଟା ଏକା ପାରିବ କମିତି । ତାକୁ ଧରିବା ମାତ୍ରେ ସେ ଆହା ଆହା କହିବାରୁ ପାଟେଳ ଯାଇ କୋଢ଼ିଆର ଗୋଡ଼ ପାଖରୁ ଧସଧରି କରି

ଯବେଁ ଗୃହ୍ମା ଭିତରକୁ ଆଣିଲେ । ଦୟା ଗରମପାଣି କରି କଷ-ପାଣି ଦେଇ ତା’ ଘା’ ଗୁଡ଼ାକୁ ଧୂଆଧୋଇ କଲ । ହେଲେ ସବୁ-ବେଳେ ଘା’ଗୁଡ଼ାକ ଭଡ ଭଡ଼ । ପୂଜ ଗୁଡ଼ାକ ପେଜପରି ଗଡୁଚ । ବୁଡ଼ାଟା ଧୋଡ଼ ବୁଝିବାକୁ ଅବଜ୍ଞ । ଦୟାବଶ ତାକୁ ପଡିଛାବ ଜିଷ୍ଣୁମନରେ ସେବାକଲ । ତେଣେ କୈଳାସ ନଗରରେ ବଡ଼ ଗଣ୍ଡଗୋଳ । ଗଣେଶ କାର୍ତ୍ତିକଙ୍କର ହରଗଡ଼ ଲଢ଼େଇ । କାର୍ତ୍ତିକର ବାହନ ମୋଜ ସାପଟାକୁ ଖାଇବାକୁ ଆଣିଥିଲ, ଗଣେଷ ମୂଷାକୁ ସିଏ ବାଘଇଛ ବୋଲି ଏଇଥିପାଇଁ ଗଣେଶ କହିବାରୁ କାର୍ତ୍ତିକ ତା କୁଲପରି ନାକ ବଟାକୁ ମୋଡ଼ ଦେଇଛ । ଗଣେଶ ଲମ୍ବାନାକଟାକୁ ଉପରକୁ ଟେକ ଭେଁ ଭେଁ କାନ୍ଦୁଛନ୍ତି । ସେଇଥିପାଇଁ ଗଣ୍ଡଗୋଳ ।

ସଙ୍ଗାତ କାର୍ତ୍ତିକକୁ ଭଲପା’ନ୍ତ । ସେଥିପାଇଁ ସେ ତା ପକ୍ଷ ନେଇ କହୁଛନ୍ତି, କାନମୋଡ଼ଚ୍ ବେଶ୍ କରିଚୁ । ଏଣିକ ପକେଇଅ । ଏ କଥାରେ ଗଣେଶ ବେଶି ଭେଁ ଭେଁ ହେବାରୁ କାର୍ତ୍ତିକ ପୁଣି ବଗିଡ଼ କହୁଛି—ଆରେ ହାରାମଜାଦ ମୋତେ ପୁଣି ଡେଙ୍ଗା ଦାନ୍ତରେ ଖତେଇ ହେଲୁ । ଏମିତ ଘାଣ୍ଟିଗୁଣ୍ଡି କରିବାରୁ ଗୌରୀ ସେଠେଇ ଘରୁ ଦୌଡ଼ିଆସି ଗଣେଶଙ୍କୁ କାଖେଇ ନେଲେ । ଗଣେଶ କହିଲ, ମୋ କାନକୁ ଭାଇ ମୋଡ଼ିଦେଲେ । ଗାନମା’ କହିଲ, ଭଲକରିଚ । ସେଇଠୁ ଉମା ବଗିଡ଼ଯାଇ ଗଙ୍ଗାକୁ କହିଲେ ଆଲେ ଖଳଖଳୀ ଖକେଇ, ପିଲଙ୍କ କଳଗୋଳ ଛୁଟେଇ ନ ଦେଇ ଆହୁରି ଯୁଟେଇଚୁନା ! କାଲେ ଗେରସ୍ତର ବେଶି ଆଦର ପାଇ ତା ମୁଣ୍ଡରେ ଚଢ଼ି ନାଚଲୁ, ପୁଣି ଭାଇ ଭାଇଙ୍କ ଭିତରେ କଳି ଲଗେଇ ଘରଭଙ୍ଗା କାମ କରିବାକୁ ବସିଚୁନା ? ଏକଥା ଶୁଣି ଗଙ୍ଗା କହିଲେ ଆଲେ ! ମୁଁ କଳିଗୋଳ ନା ତୁ କଳିଗୋଳ ? ଦୁନିଆକୁ ପଚରି କାହାର କଳଗୋଳ ହଣାକଟା ଲଗେଇବା ଦେଖି ଶୁଣି

ଶିବଘର ଓଳ ପାଷାଣ ହୋଇ ମଲ୍ଲଣି । ଦୁର୍ଗା ଏ କଥାରେ ରାଗି ଅଗ୍ନିବର୍ଣ୍ଣ ପାଲଟି କହିଲେ—(ଗୀତ)

ଉମା—ସବୁଦିଆ ଏ ପ୍ରକାର ରାଉଟା କ ହାଲଗି ପାଏ ଶାନ୍ତଲେ ।

ଗଙ୍ଗା—ତୃପଳର ମୁହଁ ଭାଲିଲ ଏଠାକୁ ଉଦେଖିଲେ ବାନ୍ଧଲେ ।

ଉମା—ଯା ଯା ଖଳେଇ ଜକଜକରଡ଼ା ଝଇ ମା ମୁଣ୍ଡରେ ଚଢ଼ିଲେ ।

ଗଙ୍ଗା—ତୁ ରତ ଚଳ ଗୁହିର ନଚିମା କଥାରେ କାହିଁକ କଡ଼ଲେ ।

ଉମା—ମାଇନ କରିବାଜନି ତସିଥିଲ ଚୋବଟପର କଡ଼ହାଖଲେ ।

ଗଙ୍ଗା—ନହିଁ ସାପୁରକୁ ଜାନୁ ଦେଖାଇଲ ଭୁଟି କେଡେକଡ଼ ସଖଲେ ।

ଉମା—ପୂର୍ବ ଶାର ଭୁକ୍ତ ଶାନ୍ତନୁ ରଜାର ମାଇଲୁ ସାତଟା ପୁଅଲେ ।

ଗଙ୍ଗା—ଭଲା ଘଇତାରେ ପୁଅଟେ ହେଇଲୁ ହାଣ୍ଡିପର ମୁହିଁଲେ ।

ଉମା—କେତେସବୁଘରେ ଧୂଅଜାତକଲୁ ଅଭୂଆଡ଼ ଭଳି ମଲଲେ ।

ଗଙ୍ଗା—ଧରି ନ ପାରିଲୁ ପୁଅଟେ ପେଟରେ ଛଅଟା ମୁଣ୍ଡହେଲଲେ ।

ଉମା—ଆଳେ କଣିଭୁ ବଳସ୍ତୁକୁ ଦେଲୁ ତାପୁଅକୁ ମୁକ୍ତ ଭ୍ଲେଦଲେ

ଗଙ୍ଗା—ନାଶି ପାରିଲନ ସୁଆମୀରଭଷ କହିବାକୁ ନାହିଁ ଲାଜଲେ ।

ଉମା—ଜୁଆ ରକାରଣୀ ଭେଳାବୁଡ଼ା ଗୋଡ ଦେଖି ଜହ୍ନୁ ଦେଲେ ପିଇଲେ ।

ଗଙ୍ଗା—ଲଜନାହିଁ କେଢ଼େ କାକଳେକୁ ଘରେ ଗୋଧି ରୁପେ ଥିଲୁ ରହିଲେ ।

ଉମା—ଜଞ୍ଜାଳ ଆଣିଲ ଭଗିରଥ ତୋତେତାକୁ ବଧିଲୁ କୁଦଣ୍ଡିଲେ

ଗଙ୍ଗା—ତୋ ଅଣ୍ଡିରଚଣ୍ଡି ଭାବକୁ ଦେଖି ବାପନାଆ ହେଲଚଣ୍ଡିଲେ

ଏମିତି କରି ଉମା ଗଙ୍ଗା ଦୁହେଁ କଳି କଲାବେଳେ ନାରଦ ପହଞ୍ଚି କହିଲେ, ହାଁ ହାଁ ଆଉଲ ତୁମେ ଝିଅଯୋଡ଼ାକ ଏସବୁକଜିଆ କଉ ଶିଖିଲଣି କେଉଁଠାରୁ । ଯା କହନ୍ତ ହେମୁଁ ରହିବା ଘରହେଲେ ନାସ ହକୁମ ଜାର ହୁଏ, ଯେମିତି କରୁଛ କାହିଁକ । ଉମା ମୁଣ୍ଡରେ ଓଢ଼ଣା ଦୁଆଇ ଆସି କହିଲେ ଦେଖନା ଭାଇ । ବୁଆଟାରେ ମୋତୁ ଟୋଇ ଖୋଳି ନାଳ ହାଉଚ ।

ଗଙ୍ଗା ମୁହଁ ମୋଡ଼ କହିଲେ—ମଲାଲେ ଚତୁସ୍ତ, ସଚରେ ଯେମିତ ଜମିକ ମାଇକନିଆ । କିଛି ଜାଣେନ । ନାରଦ କହିଲେ ଆହା ଏମିତ ପଦକୁ ପଦ କହିଲେ—"କଥଂ କଥେ କଥାମାତେ—ଚଶିଭୂଲମୋତେ ଗାଲ, ଯାଇବୁଲେ ମୋତେ ମାଇ ।" ତୁମେ ଜୁନ ହୁଅନ । ଶିବଟାନ୍ତ ଚେଣେ କୋଡ଼ି ବେଗରେ ପଡ଼ି ସଡ଼ୁଛି । ପୁଣି ଗୋଟାଏ ଗଜା ଝିଅକୁ ନେଇ ମଜାରେ ଅଛି । ଏଣେ ଘରେ ଲଗେଇ ଯାଇଛ ସର୍ଜିକୁଣିଆ କଳ । ଦ୍ୟାପର ଘର ବୋଲି ଖଣ୍ଡିଏ ନାହିଁ, ଘରଣୀ କଷ୍ଟ ଯୋଡ଼ାଏ । ଯାହା କହନ୍ତି—

"କାମ ନ ଅଛିତ କର ଦୋହଗ ଘର,
କଳ ନ ଅଛିତ ଯୋଡ଼ାଏ ମାଇପ କର ।"

ସେମିତ କରିବସିଛି । ଦେଖିପୋ ଲଙ୍ଗଳାଟାକୁ ଲଜ ନା ଶର୍ମ ।

ନାରଦ କଥାଶୁଣି ଉମା କାଚାହୋଇ କହିଲେ, କ'ଣ କହୁଚ କକା । ସିଏ କ'ଣ ଦୋହଗ ଘର କରି ସଜାଝିଅକୁ ନେଇ ରହିଲେଣି । "ରହିଲେଣି କ'ଣ ଲେ । ରହିଲଣି । ଗୋଟାଏ ଲୁହେଁଲେ ଝିଅ, ପାଞ୍ଚୋଟି ଟୋକକୁ ନେଇ ବୁଢ଼ା କାଳରେ ମଉଜ କରିବାକୁ ବସିଛି । ହେଳେ ଯୋଗ୍ଯ କୋଢି ରୋଗ ଧରିଥନା, ଏଁ ଏଁ ଅଃ କହି ନାରଦ ଓଙ୍କାର କାଢ଼ିବାକୁ ଲାଗିଲେ । ଗଙ୍ଗା କହିଲେ କ'ଣ କହୁଚ କକା । ନାଗ ହୋଇ ସେ ଶିବପରା ଦେବତା ବଶ କରିନେଲେ ? ସେ କ'ଣ ଆମଠାରୁ ସୁନ୍ଦରୀ । ନାରଦ କହିଲେ ହେଃ ହେଃ ଦଟେଇଲୁକେ ଝିଅ କୁ । ଶାସ୍ତ୍ର କହିଛି—

"କୁଙ୍କୁମପଙ୍କ କଳଙ୍କିତା ଦେହା
ଗୌର ପୟୋଧର କମ୍ପିତ ହାରା
ନୂପୁର ହଂସ ରଣତ୍ପଦପଦ୍ମା
କଂନବଶୀ କୁରୁତେ ଭୂବରାମା ।"
"କୁସୁମ ରେଣୁ କୁଙ୍କୁମ ରାଗ ରଞ୍ଜିତ
କୋମଳାପୂବଙ୍ଗ ତନୁ ଲାବଣ୍ୟ ଲଳିତ ।

ଗଙ୍ଗର ପୃଥୁଳ କୁଚମରେ ମଣିହାର
ଡୋଳାଇ ଚଳାଇ ପାଦେ କଙ୍କିଣୀ ନୁପୁର ।
ରୁଣୁଝୁଣୁ ନାଦେ ଯେତେ ସୁନ୍ଦରୀ ରମଣୀ
ବଶକର ନ ନଅନ୍ତ କାହା ମନ କଣି ।"

ସିଏ ଯେଉଁ ରୂପସୀ ଯୁବତୀ, ସେମାନେ ପରା ଶିବଙ୍କୁ ଶବ କରିବାକୁ ବସିଲେଣି । ପରବୁଝୁ କଣ ? ଏକଥା ଶୁଣି ଗଙ୍ଗା କହିଲେ, ସେମିତି ହବନାଇ କକା, ମୋତେ ଠକଣାଟି ବତେଇଦିଅ । ମୁଁ ଏଇଲେ ଯାଇ ତାଙ୍କୁ ସେଠୁ ଛଡେଇ ଆଣେ । ନାରଦ କହିଲେ, ତୁ ସେ ଯାଏ ଯିବୁ କେମିତି ଝିଅ ! ସେ ଜାଗାଟାତ ଖାଲି ପାହାଡ଼ । ପାହାଡ଼ଟା ଉପରକୁ ଚଢିବୁ କମିତି । ଗଙ୍ଗା କହିଲେ, ମୁଁ ପାରିବ କକା ! ଧୀରେ ଧୀରେ ଯାଇ ଶିବଙ୍କ ପାଖରେ ପହଞ୍ଚି ତାଙ୍କୁ ଘେନି ଆସିବି । 'ଧୀରପାଣି ପଥର କାଟେ', ବୋଲି ଜାଣତ କକା ? ନାରଦ କହିଲେ, ପାରିବୁତ ଯା । ଆର୍ଯ୍ୟାବର୍ତ୍ତଖଣ୍ଡକ ପାର ହୋଇ କଳଙ୍ଗ ଖଣ୍ଡକୁ ଯିବୁ । ସେଠାରେ ଯାଇ ପୂର୍ବଘାଟ ପାହାଡ଼ ଶାଖା ଭେଟିବୁ । ତା'ପରେ ଦେଖିବୁ ଦେବଗିରି ଶାଖା । ଯେଉଁଠି ଦେଖିବୁ ଗୋଟିଏ ପାହାଡ଼ର ପାଞ୍ଚୋଟି ଶୃଙ୍ଗ ଅଛି, ସେଇ ପାହାଡ଼ର ପଶ୍ଚିମ ପାଖକୁ ଶିବଙ୍କୁ ନେଇ ସେ ପାଞ୍ଚକୁମାରୀ ରହିଛନ୍ତି । ନାରଦଙ୍କକଥା ଶୁଣି ଗଙ୍ଗା ଧୀରେ ଧୀରେ ଅଗ୍ରସର ହେଲେ । ଅନେକ ବାଧାବିଘ୍ନ ଆଡ଼େଇ ଗଙ୍ଗା ସୂର ଧାର ହୋଇ ପାହାଡ଼ ପୁଟେଇ ଆସି ଦେଖିଲା ବେଳକୁ ଶିବ ବସିଛନ୍ତି । ବସୁନ୍ଧରୀ ତାଙ୍କ ଘା'ରେ ମଲମ ଲଗାଉଛି । ଶିବ ଟିକିଏ ଆରାମରେ ଅଛନ୍ତି । ଏଇ ସମୟରେଗଙ୍ଗା ଗୋଟାଏ ସରୁ ଧାର ଶିବଙ୍କ ମୁଣ୍ଡରେ ଝରିପଡ଼ିଲା ଝୁରୁ ଝୁରୁ ହୋଇ । ଗଙ୍ଗାଜଳର ପରଶ ପାଇ ଶିବ ଚଙ୍ଗାହୋଇ ଉଠିଲେ । ତା'ପରେ ଗଙ୍ଗାଙ୍କୁ ଦେଖି ପଚାରିଲେ, ତୁମେ କମିତି ଏଠାକୁ ଆସିଲ ? ଗଙ୍ଗା କହିଲେ, ନାରଦ କକା ଖବର ଦେଲେ ତୁମକୁ କୁଷ୍ଠରୋଗ ହୋଇଛି ବୋଲି । ସେଥିପାଇଁ—

ଏହି ସମୟରେ ନାରଦ ବୀଣା ବଜାଇ "ଶଶୀ ଲାଞ୍ଛନା ରଞ୍ଜିତ ସନ୍ନ୍ୟକୂଟଂ, ସୁର ଶୈବଳନୀ କୁତ ପୂତଃ ଜଟଂ, ପ୍ରଣମାମି ଶିବଂ ଶିବଃ କଳ୍ପତରୁଂ ଗାଇ ଗାଇ ପହଞ୍ଚିଲେ । ତାଙ୍କୁ ଦେଖି ଶିବ କହିଲେ, କ'ଣ ଖବର ନାରଦ । ନାରଦ କହିଲେ, ତେଣେ ଘରବୁଡ଼ ପାଣି ଆଣୁ ଯାଏ ନେଇ । ଗଣେଶ କାର୍ତ୍ତିକ ପିଟାପିଟି ହେଉଛନ୍ତି । ଝିଅାରଟା ମୋର ଖଟି ଖଟି ଝୁରିଗଲୁ ସାରିଲାଣି । ଇଏ କେଉଁଠୀ ଯୋଉ ଗଙ୍ଗା, ଘରର ଖବର ଅନ୍ତର ଟିକଏ ବୁଝନ୍ତା ଭଳି ? ଶିବ କହିଲେ, କ'ଣ କରିବ ନାରଦ ! ଏଠାକୁ ଆସି ମୋ ପାଦରେ ଭକ୍ତି ଶୃଙ୍ଖଳ ଲାଗିଯାଇଛି । ତାକୁ ଛୁଡ଼େଇ ପାରୁ ନାହିଁ କି ଯାଇ ପାରୁନାହିଁ । ଏବେ କରିବ କ'ଣ । ଗୋଟାଏ ଉପାୟ ବତେଇଲ ନାରଦ ! ନାରଦ କାନମୂଳ କୁଣ୍ଡେଇ ଦୟାଳୁ କହିଲେ—ଦୟାବତୀ ! ତୁମେ ସତୀ, ପ୍ରତିପ୍ରାଣା ଧାମ କା, ଏକାନ୍ତ-ନିଷ୍ଠା ବଳରେ ଶିବ ଗଙ୍ଗାକୁ ଟାଣି ଆଣିଚ । ତୁମର ସାଧନା ସଫଳ ହୋଇଛି । ଏବେ ଶିବଙ୍କୁ ଛାଡ଼ିଦିଅ ।

ଏ କଥାରେ ଦୟାବତୀ ମୁହଁଛୁଆଁଡ଼ି କହିଲା, କୋଉ ଶିବ ମ ! ମୁଁ ତ ଗୋଟିଏ କୁଷ୍ଠ ରୋଗୀକୁ ଧରିଆଣି ସେବା କରି କରି ଭଲ କଲିଣି । ଶିବ ଫିବ କଏ ମୁଁ ଚିହ୍ନେନା । ମୋ ସ୍ୱାମୀଙ୍କି ମୁଁ ଛାଡ଼ି ଦେବି ନାହିଁ । ଏହା କହି ଶିବଙ୍କ ଘା'ରୁ ପୂଜ ଚିପିଲା । ଗୋପା ଗୋଟାଏ ବାଡ଼ଣା ଆଣି ବାଡ଼ିଦେଲା ଶିବଙ୍କୁ । ନାରଦ ଦେଖିଲେ ବଡ଼ ବିପଦ । ଶିବ ଖାଲି ଚଙ୍ଗଚଙ୍ଗ ହେଉଥାନ୍ତି । ନାରଦ ପୁଣି ଥରେ ବିନୟ କରି ଦୟାବତୀକ କହିଲେ—ଦୟା ବଗିଡ଼ି ଉଠି କହିଲା, କେତେ ବକର ବକର ହେଉଛମ ! ଶିବ ଏଠି କାହାନ୍ତି ଯେ ଖାଲି ଶିବ ଶିବ କହୁହେଉଛ ? ଏକଥା ଶୁଣି ଆଖି ପିଛୁଡ଼ାକେ ଶିବ କୋଡ଼ି ରୁମ ଗୁଡ଼ ବଜରୂପ ଧରି ଛିଡ଼ାହେଲେ । ତାଙ୍କୁ ଦେଖି ନାରଦ ଗାଇଲେ "ଗିରିରାଜ ସୁତାନ୍ୱିତ ବାମତନୁଂ ତନୁ ନିନ୍ଦିତ

ବ୍ଜଟିତ ଭୂମିଧରଂ, ତଧିବସ୍ତୁ ଶିରସ୍ଥିତ ପାଦଯୁଗଂ, ପ୍ରଣମାମି ଶିବଂ ଶିବଃ କଲ୍ପତରୁଂ ।" ଶିବଙ୍କୁ ଦେଖି ଦପ୍ତାବଣ ଲମ୍ବହୋଇ ପାଦ ତଳେ ପଡ଼ିଗଲା । ଅନ୍ୟ ସ୍ୱଟସଖୀ ତା'ର ମଧ୍ୟ ଦଣ୍ଡବତ ପ୍ରଣାମ କଲେ । ଶିବ ତାଙ୍କୁ କଲ୍ୟାଣ କଲେ । ନାରଦ ଉଠାଇ ଦେଇ କହିଲେ, ତୁମର ସାଧନା ସିଦ୍ଧ ହୋଇଛି । ଏବେ ତୁମେ ଶିବଙ୍କଠାରୁ ମୋକ୍ଷବର ମାଗିନିଅ ।

ଏହାଶୁଣି ଦପ୍ତାବଣ ହାତଯୋଡ଼ି ହୋଇ କହିଲା, କାଳଜୟୀ ଶିବଙ୍କୁ ଆଖିରେ ଦେଖିଲୁ ଏଇ ଯଥେଷ୍ଟ । ଏବେ ଆମେ ପାଞ୍ଚସଖୀ ଯେପରି ଶିବଙ୍କୁ ଗଙ୍ଗାଜଳ ଦେଇ ପ୍ରତିଦିନ ପୂଜା କରିବୁ ସେଇ ବର ଦିଅନ୍ତୁ । ଏହାଶୁଣି ଗଙ୍ଗା କହିଲେ, ମୁଁ ଯେପରି ବହିଆସିଛି ସେପରି ବୋହି ଆସିବ, ହେଲେ ପାହାଡ଼ ତଳକୁ ଖସିବ ନାହିଁ । ମୋତେ ଧରି ରଖିବାର ପ୍ରତିଶ୍ରୁତି ଯିଏ କେହି ଦିଅନ୍ତି ତା'ହେଲେ ମୁଁ ଆସିବା ଯେଇଠି ପାବଣ ଆଗେଇ ଆସି କହିଲା ମୁଁ ମୁଣ୍ଡପତେଇ ତୁମ ଧାରକୁ ସମ୍ଭାଳିବି । ସେଇଠୁ ଶିବ ତାଙ୍କୁ କଲ୍ୟାଣ କରି କହିଲେ ପଞ୍ଚକନ୍ୟା ! ତୁମମାନଙ୍କ ସେବା ନିଷ୍ଠାରେ ମୁଁ ମୁଗ୍ଧ ହୋଇଛି । କାଲି ରାତି ପାହିବା ବେଳକୁ ମୁନିକୃତଙ୍କ ସମାଧିର ଉତ୍ତରକୁ ପଞ୍ଚାନନର ପାଞ୍ଚୋଟି ଲିଙ୍ଗ ଦେଖିବାକୁ ପାଇବ । ସେ ଲିଙ୍ଗ ମୁଣ୍ଡରେ ଗଙ୍ଗାର ଏହି କ୍ଷୀଣଧାର ବୋହୁଥିବ । ଆଜିଠାରୁ ତୁମର ଏ ଆଶ୍ରମର ନାମ ହେବ ପଞ୍ଚଲିଙ୍ଗ । ଏହା କହି ଶିବ ଅନ୍ତର୍ଦ୍ଧାନ ହୋଇଗଲେ । ଏ ଥିଅ ପାଞ୍ଚଟି କନ୍ଦାକଣା କରି ନାରଦଙ୍କୁ ଭଖାଇଦେଲ ।

ରାତି ପାହିବା ବେଳକୁ ଦେଖାଗଲା ସତକୁ ସତ ପାଞ୍ଚୋଟି ଶିବଲିଙ୍ଗ ପାଖାପାଖି ଉପୁଜିଛି । ଗଙ୍ଗାର କ୍ଷୀଣ ଧାରଟିଏ ଝରି ପଡ଼ୁଛି ଶିବଲିଙ୍ଗ ଉପରେ । ସେଇଠୁ ଏମାନେ ଖୁସିହୋଇ ଯାଇ ଶିବଲିଙ୍ଗ ଦର୍ଶନ କରି ପୂଜାବିଧି କଲେ । କଥାମୁତାବକ ପାବଣ

ଶିବପୂଜା ସାର ତଳକୁ ମୁଣ୍ଡପୋତିଲା ଗଙ୍ଗାବନ୍ଦିନୀ ଧାଇଁ ତାହାର ମୁଣ୍ଡରେ ପଡ଼ି ତାକୁ ବୁଡ଼ି ନେଇଗଲା ପାତାଳକୁ । ଆଉସଖୀମାନେ ହାୟ ହାୟ କଲେ । ନାରଦ କହିଲେ, ତାକୁ ଆଉ ପାଇବ ନାହିଁ । ସେ ଗଙ୍ଗାଜଳର ସଙ୍ଗତ ପାଇ କୁଣ୍ଡରେ ପରିଣତ ହେଲାଣି । ଆଜଠାରୁ ଏ କୁଣ୍ଡର ନାମ ରହିଲା ପାର୍ବତୀକୁଣ୍ଡ । ଦେଲେ ଦମୟନ୍ତୀ ପାର୍ବତୀକୁ ଛାଡ଼ିପାରିଲା ନାହିଁ । ସେହି କୁଣ୍ଡକୁ ଡେଇଁ ପଡ଼ିଲା । ନାରଦ କହିଲେ, ସର୍ବନାଶ ହୋଇଗଲା । ତଳକୁ ଯାଇ ଦେଖିବ, ଏମାନେ ବାହାରିବେ କି ନାହିଁ ? ଫାଟୋଳିକି କହିଲେ ପାହାଡ଼ ଚୂଡ଼ାକୁ ଯାଇ ଦେଖିବଟି, ଏମାନେ ଦିଶୁଛନ୍ତି କି ନାହିଁ । କୁସୁମକୁ କହିଲେ ଦକ୍ଷିଣଦିଗକୁ ଯାଇ ଜଗିବସ, ଏମାନେ ବାହାରିଲେ ଅଟକାଇବ । ଋଷିଙ୍କ ଆଦେଶ ମାନି ଉଭୟକନ୍ୟା ଉଭୟଦିଗକୁ ଯାଇ ବସିଲେ । ହେଲେ ଦମୟନ୍ତୀଙ୍କ ଦେଖାନାହିଁ । ଫାଟୋଳୀ ଦେଖିଲା ନାରଦ ଦୃଢ଼ ମନରେ ସେ ଶିବଲିଙ୍ଗକୁ ପୂଜା କରୁଛନ୍ତି ।

ଦୁଇଦିନ ବାଦେ ନାରଦ ପୁନାସାର ଆସି କହିଲେ ଫାଟୋଳୀ ଦମ୍ପା ପାର୍ବତୀ ବାହାନ୍ତି । ଆଜ ପାର୍ବତୀକୁଣ୍ଡରେ ପରିଣତ ହୋଇଛି । ଦମୟନ୍ତୀ ଦମୟନ୍ତୀ ନାମଧରି ବହିଗଲାଣି । ତୁ ମଧ୍ୟ ସେହି ପଞ୍ଚଶିବ୍ୟ ଗିରି ଚୂଡ଼ାରେ ବସି ଶିବ ଦର୍ଶନ କର । ଆଜଠାରୁ ତୋ ନାମ ଅନୁସାରେ ଏ ପର୍ବତ ନାମହେଲା ଫାଟନୀ ଶିଖା । ସେଠାରୁ ଯାଇ କୁସୁମକୁ କହିଲେ, ତୁ ଏଇଦ୍ୱାର ଜଗଥା । ଜରାସନ୍ଧକୁ ମାରିବାକୁ ଭୀମକୁ ନେଇ କୃଷ୍ଣ ଆସି ଏଇବାଟେ ନେଇଯିବେ । ତାଙ୍କୁ ଦର୍ଶନ କରି ତୁ ସ୍ୱର୍ଗକୁ ଯିବୁ । ତୋର ନାମ ଅନୁସାରେ ଏହି ଜାଗାର ନାମ ହେଲା କୁସୁମ ଦ୍ୱାର । ସେଠାରୁ ଓହ୍ଲାଇ ଆସି ଦେଖିଲେ, ଗୋପା ବୁଢ଼ୀ ବସିଛି । ନାରଦ ତାକୁ କହିଲେ, ଦମୟନ୍ତୀ ଗଙ୍ଗାଜଳ ହେବ ନନ୍ଦୀରୂପ ପାହାଡ଼ ହେବ

ଅସୁଚ । ସେହି ଜଳର ସ୍ପରଶ ପାଇଲେ ଚୋର ମୁକ୍ତ ହେବ । ହେଲେ ଚୋର ଅପେକ୍ଷା କରିଥିବା ଜାଗାରେ ଗୋଟିଏ ରାଜା ରାଜଧାନୀ କରିବ । ସେ ନଗରୀର ନାମହେବ ଗୋପାଗଡ଼ । ଏହାକହି ନାରଦ ଶିବାଷ୍ଟକ ପଢ଼ି ପଢ଼ି ଆଗେଇଲେ । ଏ ସ୍ୱର୍ଗକନ୍ୟା ଯଥା କାଳରେ ନିର୍ବାଣ ଲାଭକରି ସ୍ୱର୍ଗାରୋହଣ କରିଛନ୍ତି । ସେହି ଯୁଗରୁ ପଞ୍ଚଲିଙ୍ଗେଶ୍ୱର ଶିବ ଧାମ ନିର୍ଜନ ବନସ୍ତରେ ଅବସ୍ଥିତ । ଏ ପଞ୍ଚକନ୍ୟାଙ୍କ ନାମ ଅନୁସାରେ ତାଙ୍କ ଧାମକୁ ନେଇ ରହିଛି ଦସ୍ମାନଦୀ, ପାର୍ବତୀ କୁଣ୍ଡ, କୁସୁମ ହାର, ପାଟଳୀ ଶିଖା ପାହାଡ଼ ଓ ଗୋପ ଗଡ଼ । ବୁଝିଲୁଟି ଅବୋଲକରା ! ତୁ ଯେଉଁ ପଞ୍ଚଲିଙ୍ଗ ଶିବଙ୍କ କଥା କହିଲୁ, ସେ ହେଉଛନ୍ତି ପଞ୍ଚକନ୍ୟାଙ୍କ ଏକ କଷ୍ଟ ସାଧନା ଲବ୍ଧ ଶିବଲିଙ୍ଗ । ଲୋକେ ତାଙ୍କୁ ପଞ୍ଚଲିଙ୍ଗେଶ୍ୱର ବୋଲି କହୁଛନ୍ତି । ଏହା କହି ଗୋସେଇଁ ଭୋଜନର ଆୟୋଜନ କଲେ ।

ପଞ୍ଚଲିଙ୍ଗେଶ୍ୱର ଶିବକଥା ହେଲା ଶେଷ
ପାଠକେ କ୍ଷମିବ ତ୍ରୁଟି ତେଜ ମନୁ ରୋଷ ।
ପଞ୍ଚଲିଙ୍ଗ ପୂଜାକଲେ ଦିଅନ୍ତି ବାଞ୍ଛାବର
ଜାଣେ ଅଭୟ ଚରଣ କଥା ଛନ୍ଦକର ।

## ବୁଢ଼ା ବାପା ଓ ଟୋକା ବନ୍ଧୁ କଥା

ଦୁଇଦିନ ବାଦେ ଗୋସେଇଁ ଅବୋଲକରା ସେଠାରୁ ଯାଇ ଛଅକୋଶ ବାଦେ ଗୋଟିଏ ଧର୍ମଶାଳାରେ ବସାକଲେ । ଗୋସାଇଁ କହିଲେ, ଅବୋଲକରା ଆଠଅଣା ପଇସା ନେଇ ଯା, ବଜାରରୁ ଛତୁଆ ଗୁଡ଼ କିଣି ଆଣିବୁ । ଚୂଡ଼ା ଅଛି । ସେଥିରେ ରାତିଟା ଚଳି-ଯିବ । ତହୁଁ ଅବୋଲକରା ଗଣ୍ଠିଲି ରଖି ଛତୁଆ ଗୁଡ଼ ଆଣିବାକୁ

ଗଳ୍ପ । ସେଠାରୁ ନେଉଛି ସବୁଦା ରଖି ପଦ୍ମବନ, ଗୋସାଇଁ ! ଗୋଟାଏ ମଜାର ଜନଷ ଦେଖି ଆସିଲି, ତା'ର ତାତ୍ପର୍ଯ୍ୟ କ'ଣ କହେଇବଟି । ନୋହିଲେ ତୁମର ଘର ଥୋଇ ସବୁ ରହିବ ମୁଁ ଫେଳେଇବ । ଗୋସେଇଁ ମୁହଁରେ ମୃଦୁହସ ଦେଖେଇ କହିଲେ, କ'ଣ ଦେଖି ଆସିଲୁକି ? ଅବୋଲକରା କହିଲା, ଗୋଟିଏ ମଣ୍ଡପରେ ଗଢ଼ା ଗୋଟିଏ ବୁଢ଼ାଲୋକ ଆଣ୍ଠୁରେ ବେକରଖି ବସିଛି । ତା ସାମନାରେ ଯୁବକ ଗୋଟିଏ ହାତଯୋଡ଼ି ବସିଛି । ସେପରି ରୂପ ଗଢ଼ିବାର କାରଣ ?

ଗୋସେଇଁ ଛତୁଆ ସଜାଡ଼ୁ ସଜାଡ଼ୁ କହିଲେ—ଗୋଡ଼ହାତ ଧୋଇ ଆସ କିସ । ଗପ କହିବା, ଛତୁଆ ଖାଇବା । ଅବୋଲକରା ଖୁସିହୋଇ ଗୋଡ଼ଧୋଇ ଆସି ବସିଲା । ଗୋସେଇଁ କହିଲେ—

ଅଣ୍ଡାକର ଚରିତ୍ର ମଥା
ଅବୋଲକରାରେ ଶୁଣ ସେ କଥା ।

ଅବୋଲକରା ଖାଇ ବସିବାରୁ ଗୋସେଇଁ କହିଲେ—ଏ ଜାଗାର ନାଁ ସୁନ୍ଦର-ପାଟଣା । ପୂର୍ବକାଳରେ ନରସିମଲ୍ଲ ବୋଲି ଜଣେ ସେଠ ଏଠି ରହୁଥିଲା । ଧନ ସମ୍ପଦରେ ଘର ବାହାର ଭର୍ତ୍ତି । ଉଷ୍ଣ ପୋତା ଅସୁମାରି । ନିଜେ ଏତେ ଧନ ଅର୍ଜିଛି, ହେଲେ କଞ୍ଜୁ ବୋଇଲେ ପାଖଗାଁ ପାଟଣାରେ ଜଣେ ଲୋକ ତାର ବିଶ୍ୱାସୀ ବନ୍ଧୁ ଆଉ ସମସ୍ତେ ପ୍ରିୟଲୋକ । ଏମିତିକରି ନରସିମଲ୍ଲ ଓ ବନ୍ଧୁ ମଦନ ସୋଇଁ ବୁଢ଼ା ହେଲେଣି । ନାରସିମଲ୍ଲର ଗୋଟିଏ ପୁଅ । ତା ନାଁ ହଜାରି ମଲ୍ଲ । ହଜାରିର ଏତେ ବନ୍ଧୁ ହେଲେ ଯେ ତାଙ୍କର ପାଇଁ ଟୋକାର ପଡ଼ାପଡ଼ି ହେଉନାହିଁ । ପୁଅଟି ମାଆର ବଢ଼ଗେହ୍ଲା ।

ପୁଅକୁ ଅଠର ବର୍ଷ ହେଲାବେଳକୁ ମା ବାହା ଦବାକୁ ଅସ୍ଥିର ହେଲେ । ନରସିମଲ୍ଲ କହିଲେ—ହେଉ ବୟସ ହେଲେ ଅନେକଙ୍କର

ପାଠରେ ମନଲାଗେ । ପିଲାଦିନୁତ ପଢ଼ିଲା ନାହିଁ । ତାହା ହବାକୁ ନାହିଁ. ଟୋକାକୁ ପଢ଼ିବାକୁ କୁହ । ମା ପୁଅକୁ କହିବାରୁ ହଜାରି କହିଲା—ବୟସଉଠିଲାଣି । ପାଠଲାଗିଲାଣି ବିଷପରି । ପାଠଦେଖି ଭୟ ହୁଏ । କେଉଁଠି ଚାକିରି କରିବାକୁ ମିଳିବ ନାହିଁ କ'ଣ ? ମା ଆସି ନାତିମାନଙ୍କୁ କହିଲେ—ଦେଖିବୁଟି, ଆମ ହଜାରିର କାଖରେ ବାଳ ବଢ଼ିଲାଣି କେମିତି । ଆଉ କଣ ତାର ପାଠ ହବ ଯେ ସେ ପଢ଼ିବ କହୁଚ । 'କାଖ ତଳୁଆ ଘୁଣ, ଆମ୍ବ ତଳୁଆ ନାଠ' କେଉଁଠି ହୋଇଚି ନା ହବ । ବୁଢ଼ା କହିଲା, ହଉ ତାହାଲେ ବାହାକରେଇ ଦବା ମନକୁ ସତ ମାସକ ଭିତରେ ହଜାରିର ବାହାଘର ହେଲା । ଟୋକା ବୋହୂପାଇ ଧନ ପାଇଲାଭଳି ହେଇ ବନ୍ଧୁ ସାଙ୍ଗକର ଆଦର ମଉଜରେ ରହିଲା ।

ପ୍ରତିଦିନ ହଜାରିର ନେଉଟିବାକୁ ରାତି ବାରଟା ବାଜେ । ସେଦିନ ଆହୁରି ବେଶି ସମୟ ହୋଇଯାଇଛି । ବାହାହବା ପରେ ଆହୁରି ବେଶି ବନ୍ଧୁ ବଢ଼ିଛନ୍ତି । ସେ ଘ ଆସିବା'ଯାଏ, ବୁଢ଼ା ସେମିତି ଚିନ୍ତି ବସିଥାଏ । ସେଦିନ ଆହୁରି ବେଶିରାତି ହବାରୁ ବୁଢ଼ା ପଚାରିଲା କରେ ! ବାହାରେ ତୋର ଏତେ କଣ କଳାକା ଅଛି ଯେ ଆସିବାକୁ ରାତି ପାହିଯାଉଛି । ହଜାରି କହିଲା କଳାକା ନାହିଁ ଯେ, ହେଲେ ବନ୍ଧୁମାନଙ୍କ ସଙ୍ଗରେ ଦେଖାକରି ଆସୁ ଆସୁ ରାତି ଅନେକ ହୋଇଯାଏ । ତହିଁ ବୁଢ଼ା ପଚାରିଲା ତୋ'ର କେତେ ବନ୍ଧୁ ଅଛନ୍ତି କି ? ହଜାରି କହିଲା ଶହେଯାଏ ଥିବେ । ବାହାହବା ପରେ ଆହୁରି ସବୁଣ ବଢ଼ିଛନ୍ତି । ଅଧିକା ଯୋଉ ଯୁଗ ହେଲାଣି, ଯେତେ ବନ୍ଧୁ ଜୁଟିବେ ସେତେଭଲ । ସେତେ ଫାଇଦା ଉଠେଇ ହବ । ତାଙ୍କ ସାଙ୍ଗରେ ପ୍ରିୟତା ରଖିବାକୁ ହବନ୍ତି, ଶାସ୍ତ୍ର କହୁଛି—

ଯସ୍ମିନ୍ ଦେଶେ ନ ସମ୍ମାନ ପ୍ରୀତି ନ ଚ ବାନ୍ଧବ ।

ଯେଉଁ ଦେଶରେ ପ୍ରିୟବନ୍ଧୁ ନାହାନ୍ତି ସେଠାରେ ସମ୍ମାନ ମିଳେ ନାହିଁ । ପୁଅର ଏପରି ଅର୍ଥର ଅନର୍ଥ ଶୁଣି ବୁଢ଼ା ଟିକିଏ ହସି କହିଲା, କୋଡ଼ିଏ ନମ୍ବର ତୁ ଛ' କୋଡ଼ି ବନ୍ଧୁ ସମ୍ପାଦିଲୁଣି ନା ! ମୋରତ ଚାରିକୋଡ଼ି ବୟସ ହେଲା । ଗୋଟିକରୁ ଯୋଡ଼ିଏ ବନ୍ଧୁ କରି ପାରିଲି ନାହିଁ, ଆଚ୍ଛା ଭଲ କରିଚୁ । ସୁଖକୁ ସ୍ବର୍ଗ କୁ ଯୋଗ କରିଚୁ । ଖଣ୍ଡିଏ ଉଠା ନ ହେଉଣୁ ବନ୍ଧୁ ଯୋଗୁଁ ଦୁନିଆଁ ଖବର ଜାଣି ଯିବୁ । ଯା' ହେଉ ଏବେ କିଛି ମୋଠାରୁ ଶିଖିଗଲୁ—ଶାସ୍ତ୍ର କହିଛି ମିତ୍ରଙ୍କୁ ଜୟ କରି ଯଦି ପୁତ୍ର ଠାରୁ ପରାଜୟ ମିଳେ ସେଇ ବାପର ଜୀବନ ଧନ୍ୟ । ମୋତେ ତୁ ବନ୍ଧୁ ବଳରେ ପରାସ୍ତ କଲୁ । ମୋର ବନ୍ଧୁ ଗୋଟିଏ, ତୋ'ର ହେଉ ଶହ । ହଉ ଅନେକ ରାତି ହେଲାଣି ।

ତହିଁ ଆରଦିନ ବୁଢ଼ା ଗୋଟିଏ ଚାକରଟୋକାକୁ ଡାକିଲା, ଆରେ ତୋତେ ଗୋଟିଏ କାମ କରିବାକୁ ହେବ । ଚାକର କହିଲା, କ'ଣ ? ବୁଢ଼ା କହିଲା, ଆଜି ରାତିକି ତୁ ଖାଇପିଇ ଅମାର ପଛରେ ଯାଇ ମଲା ପରି ଶୋଇ ରହିବୁ । ଯିଏ ତୋତେ ଡାକିବ ହଲାଇବ ଶୁଣିବୁ ନାହିଁ, ମୁଁ ଯାଇ ତୋ ନାକକୁ ଚିପିଦେଲେ ତୁ ଉଠିବସିବୁ । ଏହା ଶୁଣି ଚାକର କହିଲା, ହଉ । ରାତି ହେବାରୁ ସେମିତି ହୋଇଯାଇ ସେ ଶୋଇପଡ଼ିଲା । ବୁଢ଼ା ଯାଇ ଅମାର ଖଞ୍ଜା ଦରଜା ପାଖରେ ମୁହଁ ଶୁଖେଇ ବସି ଥାଏ । ସେଦିନ ଆହ୍ବଣ ବଦେ ବାଟ ହବାରୁ ହଜାରି ବନ୍ଧୁ ମହଲରୁ କେଉଁଠି ଦେଖିଲା ବାପା ମୁହଁ ଶୁଖେଇ ବସିଚି । ଏପରି ଦେଖି କିଛି ବିପଦ ଘଟିଚି ବୁଝି ସେ ଯାଇ ପଚାରିଲା କଣ ହୋଇଚି ବାପା ? ଦୁଃଖ କରି ବସିଚ ଯେ । ବୁଢ଼ା ମୁହଁ ଶୁଖେଇ କହିଲା, ବଡ଼ ବିପଦ ହୋଇଚି ବାପା ! କଣ କରିବି ବୁଦ୍ଧି କିଛି ଦିଶୁ ନାହିଁ । ବୁଢ଼ାର କଥା ଶୁଣି, ହଜାରି ବ୍ୟସ୍ତ ହୋଇ ପଚାରିଲା କଣ ବିପଦ ହେଲା କୁହ ବାପା ! ମୁଁ ମୋର ବନ୍ଧୁମାନଙ୍କୁ ଡାକି ପ୍ରତିକାର

କରିଦେବ । ଏହାଶୁଣି ବୁଢ଼ା କହିଲା, କ'ଣ କରିବ ପୁଅ ! ଶୂକର ଟୋକାଟାକୁ ଘରେ ଚଟକଣାଟାଏ ବସାଇଦେଲ ଯେ ସେତିକରେ ସେ ମରିଗଲା । ତାକୁ ଏଇ ଧାନ ଘରେ ପୁରେଇ ଆସିଛି । ରାତି ପାହିଲେ ପୋଲିସ ଆଉ ରଖିଦେବ ନାହିଁ । ଏହାଶୁଣି ହଜାରି କହିଲା, ଇଏ କେଉଁ ବଡ଼କଥା ବାପା ! ଆସ୍ତୁ ତୁମେ ବସିଥା ମୁଁ ବନ୍ଧୁମାନଙ୍କୁ ଡାକିଆଣେ । ଆଜ ରାତିଭିତରେ ସେଟାକୁ ପୋଡ଼ି ଦେଇ କାମ ସାରିଦେବା । ଏହା କହି ସେ ଯାଇ ଜଣେ ବନ୍ଧୁଘରେ ପହଞ୍ଚି ତାକୁ ଡାକିବାରୁ ସେ ବିରକ୍ତ ହୋଇ ବିଛଣାରୁ ଉଠି ଆସି ଦରଜା ଖୋଲି ପଚାରିଲା, କଥା କ'ଣ ଏଇ ଯେମିତି ହଇଚ ହୋଇ କଥାଟା କହିଚ, ବନ୍ଧୁ ଶୁଣି ଟିକିଏ କହିଲା—ମୁଁ ତ ଯାଇ ପାରିବି ନାହିଁ । ବନ୍ଧୁ ହେଇଚୁ ବୋଲି ତୁମେ ଖୁଣୀ କରିବ, ମୁଁ ଯିବି ଖୁଣି ମଣିଷଟାକୁ ପୋଡ଼ିବାକୁ ? ଶେଷରେ ପୋଲିସ୍ ଆସି ବାନ୍ଧିବ ? ବରଷର ହେଲେ ଜେଲ ଖଟିବ ମୁଁ ? ନାଇଁ ମୋ ଦେଇ ସେ କାମ ହବନାଇଁ । ଏହାକହି ସେ କବାଟ କିଳିଦେଲା । ହଜାରି ସେଠାରୁ ମନ ଊଣା କରି ଯାଇ ଆଉ ଜଣେ ବନ୍ଧୁକୁ ସେମିତି କହିବାରୁ କହିଲା ହଉ ମୋ ପାଖରେ କହିଲ ଯଦି ମୁଁ କେଭେ ଏ କଥା ଆଉ କାହାକୁ କହିବି ନାହିଁ । ତୁମେ ମୋ ବନ୍ଧୁ ବୋଲି ତୁମର ଯେମିତି ବିପଦ ନ ହୁଏ ମୁଁ କଥାଟାକୁ ଲୁଚେଇଥିବ, ହେଲେ ତୁମେ ମଣିଷ ମାରିଚ, ତାକୁ ପୋଡ଼ିବାକୁ ଯାଇ ମୁଁ ଜେଲ୍ ଖଟିବ । ଶୁଣ, ମୋ ପାଖରେ କହିସିନା ଉଧିଚଲ । ଏଥର ପଳା ପଳା, ଆଉ କାହାକୁ କହନା । କହିଲେ ବିପଦରେ ପଡ଼ିଯିବା ତା'ଠାରୁ ଏପରି ଶୁଣି ଆଉ ପାଞ୍ଚଦଶ ବନ୍ଧୁଙ୍କଠାରୁ ଜେଉଟି ଆସି ହଜାରି ବାପାଙ୍କୁ କହିଲା, ବାପା ! ତୁମେ ଖୁଣୀ କରିଚ, ସେଇଥି ପାଇଁ ମୋ ବନ୍ଧୁମାନେ ପୋଲିସ୍‌କୁ ଡରି ଆସିଲେ ନାହିଁ । ଏହା ଶୁଣି ବୁଢ଼ା ଟିକିଏ ମନ ଊଣା କରି କହିଲା, ଆଚ୍ଛା ମୋ ବନ୍ଧୁ

ମଦାଳାକୁ ଚୁପ୍ କର କହିଲ୍ ଯାଇ ସେ କ'ଣ କରୁଛ । ସେଇଠୁ ହଜାରୀ ଯାଇ ପାଣ୍ଟଣା ମଦନ ଦୂଆରେ ଡାକବାରୁ ବୁଡା କବାଟ ଫିଟାଇ ହଜାରୀକୁ ଦେଖି ଚମକ ଉଠିଲ । ପଚାରିଲ, କଣ ହେଲ କିରେ ? ଏତେ ରାତ୍ରରେ ଆସିଲୁ କାହିଁକ ? ହଜାରୀ ସବୁକଥା କହି-ବାରୁ ବୁଢ଼ା କହିଲ, ହଉ ଚାଲେ ଶୀଘ୍ର । ରାତ୍ର ପାହିଲେ ଖତ ହେବ । ଏହା କହି ସେ ଆସି ଦେଖିଲବେଳକୁ ନଗାମଲ୍ଲ ମୁଣ୍ଡରେ ହାତଦେଇ ବସିଛି । ତାକୁ ଏପରି-ବସିବାର ଦେଖି ସେ କହିଲ, କ'ଣ ଭାବୁଛ ସଙ୍ଗାତ ! ସେ ସୁକର ଟୋକାଟା କେଉଁଠି ପଡ଼ିଛ ଦେଖେଇ ଦେଲୁଟି । ମୁଁ ପୁଅକୁ ନେଇ ଟୋକାକୁ ଧରି ଧରି ଭର ନେଇଯିବ । ତୁମେ କୋଡ଼, ଶାବଳ ନେଇ ଚାଲ । ଲାସଟାକୁ ଦୂର ବଣରେ ପୋତି ଦେଇ ଆସିବା । ତାପରେ କହିବ ଗୋରୁଗୋଠକୁ ଯାଇଥିଲା, ତାକୁ ବାଘ ନେଇଯାଇଛ । ଏହାକହି ସେ ଯାଇ ଦେଖିଲାବେଳକୁ ସୁକରଟା ପଡ଼ିଛ । ମଦନା କହିଲ, ସଙ୍ଗାତ । ଏଟାକୁ ତ ମୁଁ ଏକଲା ନେଇଯିବି । ତୁମେ କୋଡ଼ ଖୋଡ଼ ଧରି ଚାଲ । ହଜାରୀ ମହଣେ ଲୁଣ ଧରୁ । ଆଉ ଡେରି କରନା, ରାତ୍ର ପାହିଲେ ବିପଦ । ଏ କଥା ଶୁଣି ନଗାମଲ୍ଲ ଯାଇ ସୁକର ଟୋକାର ନାକ ଚିପି ଦବାରୁ ସେ ଧଡ଼ପଡ଼ ହୋଇ ଉଠି ବସିଲା । ଏହାଦେଖି ହଜାରି ଅବାକ୍ । ସେ ଦୁହେଁ ହସି ହସି କହିଲ, ଏପରି ରହସ୍ୟ କାହିଁକି କଲ ସଙ୍ଗାତ ? ତହିଁ ବୁଢ଼ା କହିଲ, ତୁମେ ତ ମୋର ଗୋଟିଏ ବନ୍ଧୁ । ପୁଅକୁ ମୋର ବାଇଶି ନ ହେଉଣୁ ବଣାଶଏ ବନ୍ଧୁ ସମ୍ପାଦିଲଣି । ତା ବନ୍ଧୁ ଆଜି ମୋ ବନ୍ଧୁ କେତେ ବୁଝେଇ ଦବାକୁ ଏପରି କଲ । ସେଇଠୁ ମଦନ ଦୁହେଁ ହସି ହସି ହଜାରୀକୁ କହିଲ, ଶାସ୍ତ୍ର କହିଛି—

"ଜାନୀୟାତ୍ ପ୍ରେଷଣେ ଭୃତ୍ୟାନ୍ ବାନ୍ଧବାନ୍ ବ୍ୟସନାଗମେ ।
ମିତ୍ରଞ୍ଚାପଦ କାଳେ ଚ ଭାର୍ଯ୍ୟାଂଚ ବିଭବକ୍ଷୟେ ।"

କାର୍ଯ୍ୟ ସମ୍ପାଦନରୁ ଭକ୍ତ ଚିହ୍ନିବ । ବିଷୟ ବାଣ୍ଟିବାବେଳେ ବନ୍ଧୁ ଚିହ୍ନିବ । ବିପଦବେଳେ ମିତ୍ରଙ୍କୁ ଚିହ୍ନିବ । ଦରିଦ୍ର ଅବସ୍ଥା ହେଲେ ଭାର୍ଯ୍ୟାକୁ ଚିହ୍ନିବ । ଏହା ଶୁଣି ପ୍ରକୃତରେ ତାର ବିଷୟବନ୍ତ ବନ୍ଧୁ ନୂତନ ବୁଦ୍ଧି ଦୁଇବୁଢ଼ାଙ୍କୁ ସେ ପ୍ରଣାମ କଲା । ହାତଯୋଡ଼ି ହୋଇ କହିଲା, ଆଉ ମୁଁ ସେ ଶଠ ମିତ୍ରଙ୍କ କଥାରେ ପଡ଼ିବ ନାହିଁ !

କିଛିଦିନ ପରେ ନାଗମଲ୍ଲର ମରଣଦଶା ଆସିଲା । ସେ ରୋଗରେ ପଡ଼ିବାରୁ ବୁଝିଲା, ମରଣ ନିକଟ ହୋଇ ଆସୁଛି । ତେଣୁ ସେ ପୁଅକୁ ଡାକି କହିଲା, ଦେଖ୍ ମୁଁ ବହୁତ କଷ୍ଟକରି ଏ ଧନଦ୍ରବ୍ୟ ଅର୍ଜିଛି । ଜାଣିଶୁଣି କରି ଯାହା ସଞ୍ଚିଛି ତୋ'ର ପାଇଁ । ତୁ ଯଦି ମୋର କଥା କେତୋଟି ମାନି ଚଳିବୁ ତା' ହେଲେ ଏ ଧନଦ୍ରବ୍ୟ ବହୁତ ଗୁଣେ ବଢ଼ିବ । ତୁ ସାରା ଜୀବନ ସୁଖ ଶାନ୍ତିରେ କଟାଇବୁ !

ତା କଥା ଶୁଣି ହଜାରୀ କହିଲା, କୋଉକଥା ମାନିବାକୁ ହେବ ବାପା ! ବୁଢ଼ା କହିଲା ଖାଇବୁନି ସଞ୍ଜେ, ଖୋଲିବୁନି ଖଞ୍ଜେ । ଖେଳିବୁନି ଯୂଆ । ଦେଖିବୁନି କୂଅ । ଶୋଇବୁନି ମଠେ । ବାନ୍ଧୋଇ ବୁନି ବୁଟେ । ଶୁଣିଥିବୁ, କହିବୁନି । ଦେଇଥିବୁ, ମାଗିବୁନି । ସତ- କର୍ମୀବୃଦ୍ଧି ଦୋଷ୍ମୀର ନାଶ, ଭଲ୍ଲୁଥିବୁ ବିଶ୍ୱାସ ନ କର । ସତ୍ତରେ ନ କରି କପଟ । ନିଜ ହାତେ ବନ୍ଧାଇବୁ ଘାଟ । ପାଣି ପିଇବୁ ମଞ୍ଚିରୁ ଛାଣି, ପଇସା ଦେବୁ ଓଲଟେଇ ଟାଣି । ସଉଦାଗର ନ କରିବୁ । ଦରିଦ୍ର ହୋଇଗଲେ ଘରର ଯୋଡ଼ି ଓଳି ଦଉଡ଼ି ଲଗେଇ ମରିବୁ । ଦୁଇ ବାରେ ବାନ୍ଧିଥିବୁ ନିଦ ପାତଳ ଘୋଡ଼ା । କଥା ବୁଝି ନ ପାରିଲେ ପଚାରି ବୁଝିବୁ ଯାହାକୁ ଦେଖିବୁ ଗଞ୍ଜମୁଣ୍ଡିଆ ବୁଢ଼ା ଏହା କହି ସେଇଦିନ ମରିଗଲା ।

ତା'ପରେ ବୁଢ଼ାର ଶ୍ରାଦ୍ଧକ୍ରିୟା ସାରି ହଜାରୀ ବୁଢ଼ା କଥାକୁ ପରୀକ୍ଷା ବୁଝିବାକୁ ବ୍ୟଗ୍ର ହେଉଥାଏ । ଜଣେ ବନ୍ଧୁକୁ ପଚାରିବାରୁ ବନ୍ଧୁ କହିଲା—ହେଃ, ହେଃ, ସେଗୁଡ଼ାକ ସେ ଯୁଗର ବୁଢ଼ାଳିଆ

କଥା । ସେ ତ'ଣ ଆମ ଯୁଗରେ ଚଳିବ ? ଦେହେ ବଳ ଥିଲେ ଡେଇଁବୁ କୂଅ । ପଇସା ଆସିଲେ ଖେଳିବୁ ଜୁଆ । ମିତ୍ର ମେଳ ଥିଲେ ଟାଣିବୁ ଗଞ୍ଜେ । ଭୋକ ଲାଗୁଥିଲେ ଖାଇବୁ ସଞ୍ଜେ । ପ୍ରିୟାକୁ କହିବୁ ମନର କଥା । ପାହାଡ ଚୂଡ଼ରେ ନାଚ ବୁଲୁଥା । ବାଙ୍କକଥା ମାର ତାଳକୁ ଦେଖି । ତାମେ ଲଗାଇବ ମନକୁ ଯୋଖି । ବନ୍ଧୁ ପରି ବୁଝାଇ ଦେବାରୁ ସେ ଆସ୍ତୁ ଆସ୍ତୁ ଦେଖିଲା, ଆଗରେ ଗୋଟିଏ କୂଅ ଅଧେ ଖୋଳା ଲୋକମାନେ ଖାଇବାକୁ ଯାଇଛନ୍ତି । ତାକୁ ଦେଖି ଭାବିଲା, ଅନ୍ୟ ତ ଖାଲି ଆସିଲା । ଦେଖେଁ କୂଅଟାକୁ ଡେଇଁ ପାରିବ ତ ନାହିଁ । ଏହା ଭାବି ସେ ଦୌଡ଼ି ଆସି ଡେଇଁ ଗଲା ବେଳକୁ କୂଅପାଖ ମଟିରେ ପାଦ ପଡ଼ିବା ମାତ୍ରେ ଭୁସ୍‌କିନା ସେ କୂଅ ଭିତରକୁ ଖସି ପଡ଼ିଲା । ଭିତରେ ପଡ଼ି ହାତଗୋଡ଼ ଛେଚି ହୋଇଗଲା । କୂଅ ଖୋଳାଳିମାନେ ଆସି ଉଠାଇଦେଲେ । ସେଇଠୁ ଟେଙ୍ଗେଇ ଟେଙ୍ଗେଇ ସେ ଘରକୁ ଗଲା । ତା'ପରେ ଦିନେ ହାଟକୁ ଯାଇ ଦେଖିଲା, ଗୋଟାଏ ଲୋକ ଛକଟରେ ଜୁଆ ଖେଳା-ଉଚି ତା ଚଲାଖ ବନ୍ଧୁମାନଙ୍କୁ ଜିତାଇ ଅନେକ ପଇସା ଦଉଚି । ସ୍ୱାଭ ଲୋଭ ହେବାରୁ ଗୋଟାଏ ହାତ ଛକରେ ଟଙ୍କାଟିଏ ଦେଇ ଚଡ଼ଡ଼ଦେଲେ ହାତ ଓଲଟିବାରୁ ହଜାଏ ଟଙ୍କାରେ ପାଇଲା ଦୁଇଟଙ୍କା । ଏପରି ଖେଳୁ ଖେଳୁ ଶହେଟଙ୍କା ଯାଏ ପାଇଲା । ଏଥରକୁ ଦେଖି ଲୋଭ ହେବାରୁ ଗୋଟାଏ ଘୋଡ଼ାରେ ହଜାଏ ହଜାରେ ଟଙ୍କା ଥୋଇଦେଲା । ତାହାଦେଖି ଖେଳାଳୀ ହାତର ଭାଇତା ତର ଚଡ଼ଡ଼ଟା ଏପରି ଓଲଟାଇଲା ଯେ ଘୋଡ଼ା ଓଲଟିଲା ନାହିଁ । ହଜାଏ ହଜାର ଟଙ୍କା ଦେଇ କାନମୁଣ୍ଡା ଆଉଁସି ଲେଉଟିଲା । ସେଇଠୁ ଯାଇ ମନମରା ହୋଇ ରହିବାରୁ ଘରଣୀ ଜେଜେ ହୋଇ ପଚାରିଲା, କଣଗୋ ! କଣ ହେଲାକି, ମୁହଁଟି ଶୁଖିଯାଇଚ ଯେ ? ହଜାସ ଦୁଃଖରେ ଶୋଇବାକୁ ଗଲାବେଳେ ନରମ

ସ୍ୱରରେ କହିଲା, ହଜାରେ ଟଙ୍କା କମରରେ ଖଞ୍ଜି ଦେଇଥିଲି ମୁଁ ସେ
ଗଞ୍ଜିଆରୁ କୁଆଟେ ବାହାରି ଉଡ଼ିଗଲା । ଏହା କହି ମୁଁ ସେ ମନ-
ଦୁଃଖରେ ଶୋଇଗଲି । ତା ପରଦିନକୁ ଯାଇ ତରବର ହେବାରୁ
ସାଇ ମାଇପି ଜଣେ ପଚାରିଲା, କି ଗୋ ! ଆଜି ଏତେ ତରବରର
କଥା ? ହଜାରି ଶର୍ମା କହିଲା, କଣ କହିବି ମିତ ! ଆମର ସିଏ
ଆଜି ହାଟକୁ ଯାଇଥିଲେ । ତାଙ୍କ ପଛଆଡ଼ୁ କୁଆଟେ (କାଉଟାଏ)
ବାହାରି ଉଡ଼ିଗଲା, ସେଇଥିପାଇଁ ସେ ଦୁଃଖରେ ଶୋଇଛନ୍ତି ।
ଦେଖଁ ଯାଉ । ଏହା କହି ସେ ଯିବାରୁ ତା ବନ୍ଧୁଟା ଆଉ କାହା
ଦେହା ଦେଖିଆଉ ଜଣେ ସ୍ତ୍ରୀଲୋକ ପଚାରିଲା, କିଲୋ ! ମଙ୍ଗରାଜ
କଣ କହୁଥିଲା କି ? ସେ କହିଲା—କି ଆଚମ୍ବିତ କଥା ଭଉଣୀ !
ଆଜି ହଜାରି ମଲ୍ଲ ପଛରୁ ଗଣ୍ଡାଏ କୁଆ ବାହାରି ଉଡ଼ିଗଲେ ।
ସେ ଶୁଣି ଯାଇ ଆଉ ଜଣକୁ କହିଲା, ହଜାରି ପଛରୁ ଚାରିଗଣ୍ଡା
କୁଆ ବାହାରି ଉଡ଼ିଗଲେ । ଆଉ ଜଣେ ଆଉ ଜଣକୁ ପଚାରିବାରୁ
କହିଲା, ଆଜି ହଜାରିମଲ୍ଲ ପଛରୁ ଦଶଗଣ୍ଡା କୁଆ ବାହାରି
ଉଡ଼ିଗଲେ । ମାଇପୀ ଜଣକ ଜଳ କାମୁଡ଼ ଦେଲାରୁ ତାଙ୍କ ଆଁ-
ଶର୍ମା ପଚାରିଲା, କଣ ହେଲାକି ମିତ । ଆଜି ହଜାରିମଲ୍ଲ ପଛପଟୁ
ଷୋଳଗଣ୍ଡା କୁଆ ବାହାରି ଉଡ଼ିଗଲେ । ସେ ତରବର ହୋଇଯାଇ
ତା ଗେରସ୍ତକୁ କହିଲା, ଶୁଣିଲଣି । ଆଜି ହଜାରିମଲ୍ଲ ପଛପଟରୁ
ଷୋଳପଣ କୁଆ ବାହାରି ଉଡ଼ିଗଲେ । ସେ କଥା ଶୁଣି ଲୋକଙ୍କଆ
ଶୋଇବାକୁ ଯିବ କଣ, ରଜାଙ୍କୁ ଏ ଖବରଟା ଯାଇ ଜଣେଇଦେଲା
ରଜା ଖବର ପାଇ ଭାବିଲେ, ଷୋଳପଣ କୁଆ ତ ସହଜ କଥା
ନୁହେ । ପ୍ରତିଦିନ ଯଦି ତା ପଛପଟରୁ ଷୋଳପଣ କୁଆ ବାହାରି
ଉଡ଼ିବେ ଆଠ ଦିନରେ ରାଜ୍ୟଟା କାଉମୟ ହୋଇଯିବ । ଯାଅ
ଡାକିଆଣ, ଫୋଜମ୍ ନେଇ ତାକୁ ବାନ୍ଧିଆଣି, ଗାରଦରେ

ରଖ । ପରେ ବୁଦ୍ଧି ବର୍ଣ୍ଣର ଗୁଡ଼ିବା । ଚନ୍ଦକଥା ବେପାଳସ ଯାଇ ହଜାରୀକୁ ଆରେଷ୍ଟ କରି ଆଣି ହାଜତରେ ରଖିଦେଲେ ।

ଚର୍ଚ୍ଚି ଆରମ୍ଭନ ମଦନ ସ୍ୱାଇଁ ଖବର ପାଇ ଯାଇ ରଜା-ଦରବାରରେ ପହଞ୍ଚି କହିଲା, ହଜୁର ! କାଲିଠାରୁ ତ ହଜାରୀକୁ ଆଣି ହାଜତରେ ରଖିଛ, କେତେଦିନ କାଳ ତା' ପଛପଟୁ ବାହାରି ଉଡ଼ିଲେଣି ? ରଜା କହିଲେ, ଆମେ ବାହାର ନାହାନ୍ତି । ସ୍ୱାମୀ କହିଲା, ସବୁ ମିଛ କଥା । ହଜାରୀ ହଜାରେ ଟଙ୍କା ଉଠେଇଦେଇ ଆସି ସ୍ୱାମୀକୁ କହିଲା, କୁଆଡ଼େ ଉଡ଼ିଲେ । ସ୍ୱାମୀ ଭାବିଲା କୁଆଡ଼େ ଉଡ଼ିଗଲା । ଯେଉ ଘୋଡ଼ା କରୁ ମାଲିକେ ତାକୁ ଷୋଳପଣ କରିଛନ୍ତି । ଏଇଥିପାଇଁ ମାଇପିଲୋଙ୍କୁ ବିଶ୍ୱାସ କରିବା ଶାସ୍ତ୍ର ମନା କରିଛି । ସେମାନେ ଅର୍ଥକୁ ଅନର୍ଥ କରି ଥାଆନ୍ତି । ରଜା ବିଶ୍ୱାସ କରି ହଜାରୀକୁ ଖଲାସ କରିଦେଲେ । ପୋଇଁ ହଜାରୀକୁ ଆଣି କହିଲା, ବାପ ! ବନ୍ଧୁ କଥା ମାନି ଚଳ ଜେଲ୍ ଖଟିବାକୁ ଯାଉ-ଥିଲୁ । ଏଣିକି ବାପକଥା ମାନି ଚଳ । ହଜାରୀର ସେଇଠୁ ହୋସ୍ ହେବାରୁ ସେ ଆସି ଆଗେ ପୋଡ଼ାଏ ନାଲି ଘୋଡ଼ା କିଣି ଦୁଇ ଓରଜା ପାଖରେ ବାନ୍ଧିଲା । ତା' ମନେଇ ବାଡ଼ିରେ ହାଟ ବସେଇ-ଦେଲା । ପୋଖରୀ ମଝିରୁ ପାଣିକୁ ଗୁଣି କରି ଆଣି ପିଇଲା । ଯାହାକୁ ଯାହା ଟଙ୍କା ଧନ ଦେଲା ମାଗିଲା ନାହିଁ । ଯିଏ ଯାହା କହିଲା ଉତ୍ତର ଦେଲା ନାହିଁ । ଘର ଛପର ନ କରିବାରୁ ଘର ଭାଙ୍ଗି ପଡ଼ିଗଲା । ଘୋଡ଼ା ପୋଷିବା, ହାଟ ବସିବାରୁ ଖର୍ଚ୍ଚ ବଢ଼ି ଛଅମାସରେ ଦରିଦ୍ର ହୋଇଗଲା ।

ଦିନେ ବସି ହଜାରୀ ଭାବିଲା, କ'ଣ କରିବ ! ବାପକଥା ତ ମାନି ବନ୍ଧୁ କଥା ମାନିବାରୁ ତ ବିପଦରେ ପଡ଼ିଲି । ବାପକଥା ମାନି ଚଳିବାରୁ ଦରିଦ୍ର ହୋଇଗଲି । ଖାଇବାକୁ ଦାନା ନାହିଁ । ବାପ କଥା ଅନେକ ତ ବଢ଼ିଲାଣି । ଗଳାରେ ଫାଶ ଦେଇ ମରିବା ଆଗରୁ

ଏବେ ଚନ୍ଦମୁଣ୍ଡିଆ କୋଉଠି ମିଳିବ ପଚାରି ଦେଖେଁ । ଏହା ଭାବି ଘୋଡ଼ାକୁ ଏକ ସର୍ପୀଆକୁ ତା' ହାତରେ ଛାଡ଼ି ଚନ୍ଦମୁଣ୍ଡିଆର ସନ୍ଧାନରେ ବାହାରିଗଲା । ପ୍ରତି ଗ୍ରାମରେ ଯାଇ ପଚାରେ, ଏ ଗାଁରେ କେହି ଚନ୍ଦମୁଣ୍ଡିଆ ଲୋକ ଅଛି କି ? ତା କଥା ଶୁଣି ଲୋକେ ପରିହାସ କରନ୍ତି । କେହି କହନ୍ତି, ପାଗଳଟା କୁଆଡ଼େ ଆସିଛି । ଗୋଟିଏ ଗାଁରେ ପଚାରିବାରୁ ସେ ଗାଁ ଲୋକ ଠେଙ୍ଗାଧରି ବାଡ଼େଇବାକୁ ଗୋଡ଼େଇଲେ । କହିଲେ, ଆରେ ଆମ ଗାଁକୁ କଣ ଅପୂରୁଷ ମନେକଲୁକି ? ଏଠି ନିଶିର ମଣିଷ ଖୋଜୁଚୁ । ସେଇଠୁ ହତାଶ ହୋଇ ମନରେ ଯାଇ କ୍ଷେତରେ ଦେଖିଲା, ଗୋଟାଏ ବରଗଛ ମୂଳରେ ବସି ଗୋଟିଏ ପାକଲା କାକୁଆ ବୁଢ଼ା ମାଟିରେ ଲେଖି କଣ ବୁଝୁଚି । ତା ଦୁଇ ଆଣ୍ଠୁ ମଝିରେ ମୁଣ୍ଡଟି ଚନ୍ଦକୁ ଚୋର୍ଦ୍ଧ ପଡ଼ୁଚି । ଦୂରରୁ ଦିଶୁଚି ବୁଢ଼ାର ଦୁଇଆଣ୍ଠୁ ଦୁଇଟା ମୁଣ୍ଡ-ପରି । ମୁଣ୍ଡ ଗୋଟାଏ । ଏହ୍ମଣର ଦୂରରୁ ଦେଖି ହଜାରୀ ଭାବିଲା, ଏଇ ହେଉଚି ଚନ୍ଦମୁଣ୍ଡିଆ ଲୋକ । ଏତେ କଷ୍ଟ ପରେ ଈଶ୍ୱର ସୁଯୋଗ ଦେଇଛନ୍ତି । ଏହା ଭାବି ବୁଢ଼ା ପାଖକୁ ଯାଇ ଜୁହାରହୋଇ ସବୁ କଥା ଜଣାଇବାରୁ ବୁଢ଼ା ପାକୁଆ ମାଟିରେ ଶିଶୁଙ୍କ ପରି ହସି-ଦେଲା ହିହି । ତା'ପରେ ନଗ୍ରମଲ୍ଲର କଥାକୁ ବୁଝି କହିଲା—

ହୋ ବାପା ଯାହା କହି ଯାଇଛନ୍ତି ସବୁ ସତ । ମାତ୍ର ତୁ ବୁଝି ନପାରି କୋଟିପତିର ପୁଅହୋଇ କୁଟାଖିଏ ବି ରଖିଲୁ ନାହିଁ । ଭଲ ଘାହାଚ କରିଛୁ କଲୁଣି । ଏବେ ଗଳାରେ ଦଉଡ଼ି ଲଗାଇ ମଝିଘର ଯୋଡ଼ ଉପରେ ଲଟକାଇ ଝୁଲି ପଡ଼ିବୁ ଯା, ଯଦି ନ ମରୁ ବାଟ, ତାହାହେଲେ ଦୁଇଟା କୁକୁର ଆଣି ଦାଣ୍ଡଦରଜା, ବାଡ଼ିଦରଜା ପାଖରେ ବାନ୍ଧିବୁ । ଯାହାକୁ ଟଙ୍କା ଦେବୁ, ଦଶଟଙ୍କାର ଜଣେ ଦଶ ଦିନ ପାଞ୍ଚଟଙ୍କା ଦେବୁ । ଯେ କନକ ଅମଳ ସୁଧ ଦେଇ ନେଇଥିବ ନ ହେଲେ ଦଶଟଙ୍କା ଜଣେ ପାଞ୍ଚଟଙ୍କାରେ ପାଇଲୁ । ବାଡ଼ରେ

ନାନାଦି ଫସଲ କରିବୁ ସେ ହାଟରୁ ନେଲ ପରେ ବେପାରୀ ଆସି କିଣିନେବେ । ଘରକୁ କୋଠା କରିଦେବୁ ସେ ଘୁଷିବାକୁ ହେବ ନାହିଁ । ବିଶ୍ୱାସ କଥା ମାଇପି ଲୋକଙ୍କୁ କହିଲେ ସେମାନେ ନ ବିଚାରି ଅନ୍ୟଲୋକଙ୍କୁ କହିଦେଲେ ଅନିଷ୍ଟ ହୁଏ । ବାଘ ଭଲୁ ନ ଗୋଡ଼ାଇଲେ କୂଅ ଡେଇଁବୁ ନାହିଁ । ଦୁଷ୍ଟ କପଟୀଙ୍କ ପାଖକୁ ଯାଇ କଥା କହିବୁ ନାହିଁ । କାରଣ, ସେମାନେ ବହୁ ପ୍ରକାର ସଙ୍ଗ କରୁଥିବାରୁ ଯା କଥା ତା ପାଖରେ, ତା କଥା ଯା ପାଖରେ କହି ଅର୍ଥ ଆଦାୟ କରନ୍ତି । ଛଣା ପାଣି ବୋଇଲେ, ଗିଲାସ ଉପରୁ କନ୍ଥି ଅଂକ ପାଣି ପକେଇ ଦେଇ ପିଇବୁ । କୂଳରେ ଗାଧୋଇଲେ ବାର ଲୋକଙ୍କ ରୋଗର ଜୀବାଣୁ ସେ ଜାଗାରେ ଥିବାର ସମ୍ଭାବନା ପଇସା କଉଡ଼ି ପଡ଼ିଲେ ମିଳେ ନାହିଁ । ମଠ ମନ୍ଦିରରେ ଶୋଇଲେ ଡାଆଣୀ ପିଶାଚୁଣୀ ଓ ଦେବ ଦୃଷ୍ଟି ଲାଗିପାରେ । ପଇସା ଯାହାକୁ ଦବୁ, ସବୁ ଲେଉଟାଇ ଗଣି ନେବୁ । ମନ୍ଦଲୋକ ପାଖରେ ଦୁଃଖ ସୁଖ କଥା କପଟ ନ କରି କହିବୁ । କାରଣ ସେମାନଙ୍କର ଆପଣା ପରର ଭାବ ନ ଥାଏ । ନଚେତ୍ ବିଚାର କରି ଭଲ ହେବାର ଉପଦେଶ ଦେଇ ଦଅନ୍ତି । ଯଦି ସାଂସାରିକ କଥା ବୁଝି ନପାରୁ ତାହାହେଲେ ଯେଉଁମାନେ ଅତି ବୃଦ୍ଧ ହୋଇଛନ୍ତି ତାଙ୍କୁ ପଚାରିଲେ ସେମାନେ ସଂସାର ଧକ୍କା ଠେଲା ପାଇ ଯେଉଁ ଅନୁଭବ ପାଇଛନ୍ତି, ତର୍କର ଅତୀତ ଅନୁଭବ କଥା ବୁଝେଇଦେବେ । ରୋଗ, ଶୋକ, କଷ୍ଟ, ଛଳ ଗୁଞ୍ଜ ସେମାନେ ମରଣ ଅପେକ୍ଷାରେ ବସି ଥାନ୍ତି ବୋଲି ଭୂତ ଭବିଷ୍ୟତ ବିଚାରି ଭଲକଥା କହି ଦିଅନ୍ତି । ଏହାଶୁଣି ହଜାରୀ ବୁଢ଼ାକୁ ପ୍ରଣାମ କରି ଆସି ଦଉଡ଼ି ଖଣ୍ଡେ ନେଇ ଘରକୁ ଗଲା ।

ମଝି ଘରର କବାଟ ଚଉକାଠ ଯୋଡ଼ ଉପରେ ଦଉଡ଼ି ବାନ୍ଧି ବେକରେ ଲଗାଇ ଯେମିତି ଝୁଲି ପଡ଼ିଛି, ଉପରଟା ଘଙ୍ଗି ଭଳ ବଡ଼

କଷ୍ଟ ହୋଇ ଯେଉଁଥିରୁ ଟଙ୍କା ସୁନା ବୋହି ପଡ଼ିଲା ଝଣ ଝଣ । ପୁଅର ଭଲ ପାଇଁ ବାପା ଯେ ଏତେ କାଇଦା କରି ଟଙ୍କା ଥୋଇ ଥିଲା ଓଳ ପୁଅକୁ ଜଣା ନଥିଲା । ହଜାଗ୍ର ସେ ଟଙ୍କା ସୁନାକୁ ପାଇ ବୁଢା କହିଥିବା ଓ ବୁଝାଇଥିବା ଅନୁସାରେ କାର୍ଯ୍ୟ କରି ନିଶ୍ଚି-ନ୍ତରେ କାଳ କାଟିଲା । ଅଳ୍ପଦିନ ଭିତରେ ଅଗାଧ ସମ୍ପତ୍ତିର ମାଲିକ ହୋଇ ସେ ସେହି ବୁଢ଼ାର ଓ ନିଜ ଯୁବାକାଳର ପ୍ରତିମୂର୍ତ୍ତି ପଥରରେ ଗଢ଼ାଇ ସେ ଜାଗାରେ ରଖାଇଦାଇଛନ୍ତି । ବୁଝିଲୁ ଏବେ ଅବୋଲକରା ସେ ପଥରମୂର୍ତ୍ତି କଥା ଏ ଗଳ୍ପଟିକୁ ମୋ ବାପା କୃତ୍ତିବାସ ଅନେକ ଥର ଉପଦେଶ ଛଳରେ କହି ମୋତେ ଶୁଣାଇଥିଲେ । ଘରୁ ଆସି ତ ଅନେକ ଜାଗା ଦେଖିଲୁ । ଅନେକ କଥା ଶିଖିଲୁ । ତୀର୍ଥ ଦେଖା ଓ ସରିଲା । ଏବେ ଚାଲ ଘରକୁ ଲେଉଟି ଯିବା । ଅବୋଲକରା ବୋଲକସ୍ଥ ସାବ ଧରିବାରୁ ଦୁହେଁ ଘରମୁଖା ହେଲେ ।

ଏଠାରେ ଅବୋଲକରା କଥା ହେଲା ଶେଷ
ପାଠକେ ଲେଖକ ତ୍ରୁଟି ନ ଧରିବ ବିଶେଷ ।
ଆଦର୍ଶକୁ ନେବ ଯେବେ ଲଭ୍ର ହେବ ଶାନ୍ତ
କହେ କଥା ରଚକର ଅଭୟ ମହାନ୍ତି ।
"ଅଯୁକ୍ତ ମସ୍ତି ନ୍ ଯନ୍ତ କାଷ୍ଠଦୁତମ୍
ଅଜ୍ଞାନତେ ବା ମତିବିଭ୍ରମାଦ୍ୱା
ଔଦାର୍ଯ୍ୟ କର୍ତ୍ତୁଂ ବହୁଷ୍ଠ- ଧୀର
ମନୀଷୀଭିସ୍ତତ୍ କୃପୟା ଶୋଧ୍ୟମ୍ ।

ସମାପ୍ତ

ମୁଦ୍ରଣ—ସୁଜାତା ପ୍ରେସ, କଟକ-୨